# ଆଲେଖିକା

ଗୋଦାବରୀଶ ମିଶ୍ର




ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲିଃ

ବ୍ରହ୍ମପୁର : କଟକ : ସମ୍ବଲପୁର

ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପାଠ୍ୟ ପୁସ୍ତକ ରୂପେ ନିର୍ବାଚିତ ।

# ଆଲେଖିକା

ପଣ୍ଡିତ ଗୋଦାବରୀଶ ମିଶ୍ର

—ପଞ୍ଚମ ମୁଦ୍ରଣ—
୧୯୫୫

—ପ୍ରକାଶକ—

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ୍ ଲି:

ବ୍ରହ୍ମପୁର : କଟକ : ସମ୍ବଲପୁର

# ସୂଚୀ

କବିତା ଗୁଡ଼ିକର ଆରମ୍ଭରେ
ପ୍ରଦତ୍ତ ଟିପ୍ପଣୀ ପ୍ରକାଶକଙ୍କ ଦ୍ୱାରା
ସଂଯୋଗ କରା ଯାଇଛି ।

# ଅଭିରାମ ସିଂହ

ସରେଇକଳା ସିଂହଭୂମ ଜିଲ୍ଲାର ଏକ ଦେଶୀୟ ଗଡ଼ଜାତ ରାଜ୍ୟ । ଏହାର ଆୟତନ ଏକୋଇଶ କୋଶ ବୋଲି ଲୋକେ କହୁଥାନ୍ତି, ପ୍ରକୃତରେ ୧୧୬ ବର୍ଗକୋଶ ଅଟେ । ଏହାର ଦକ୍ଷିଣରେ ମୟୂରଭଞ୍ଜ । କୁଚଙ୍ଗ ଓ ବାଇରଙ୍ଗପୁର ମୟୂରଭଞ୍ଜର ଦୁଇଗୋଟି ପିଢ଼ ଥିଲା । ପିଢ଼ମାନଙ୍କରେ ଜଣେ ଜଣେ ସାମନ୍ତ ରାଜା ରହୁଥିଲେ । ସେମାନେ ରାଜ୍ୟର ପ୍ରଧାନ ରାଜାଙ୍କୁ କର ଦେଉଥିଲେ । ଖରସୁଆଁ ସିଂହଭୂମର ଦ୍ୱିତୀୟ ଦେଶୀୟ ରାଜ୍ୟ । ଏହା ଦକ୍ଷିଣ-ପୂର୍ବ କୋଣରେ ସରେଇକଳାକୁ ଲାଗିଛି । ଦୁଇ ରାଜ୍ୟର ରାଜା ଏକ ବଂଶରୁ ଜାତ । ବରାହଭୂମ ବର୍ତ୍ତମାନ ମାନଭୂମ ଜିଲ୍ଲାରେ ଅଛି । ଏହା ମଧ୍ୟ ଓଡ଼ିଆ ରାଜ୍ୟ । ସରେଇକଳା ରାଜା ନାରାୟଣପୁରରୁ ଗଡ଼ ବା ରାଜଧାନୀ ପରେ ପୁଣି ସରେଇକଳାକୁ ଉଠାଇ ଆଣିଲେ । ନେହବାବଲୁଦ ପ୍ରଥମେ ରାଜଧାନୀ ଥିଲେ ସୁଦ୍ଧା, ବର୍ତ୍ତମାନ ଲୋପ ପାଇଅଛି । କୋଲ୍ହ ମୁଣ୍ଡା ଆଦି ଆଦିବାସୀ ସିଂହଭୂମରେ ଅଧିକ । ପାଉଡ଼ୀ ସେମାନଙ୍କ ଅଧିଷ୍ଠାତ୍ରୀ ଦେବତା । ବର୍ତ୍ତମାନ ଏ ଉଭୟ ଓଡ଼ିଆ ରାଜ୍ୟକୁ କଂଗ୍ରେସ ଶାସନରେ ବିହାରରେ ମିଶାଇ ଦିଆଯାଇଛି ଓ ଓଡ଼ିଆ ପରିବର୍ତ୍ତେ ସେଠାରେ ହିନ୍ଦି ଭାଷାର ପ୍ରଚଳନ ପାଇଁ ବ୍ୟବସ୍ଥା ହେଉଛି ।

୧

"ଭୁଲି ହୁଅ, ଧନ, ନ କାନ୍ଦ ଅଉ ରେ,
ସଞ୍ଜ ତ ଆସୁଛି ମାଡ଼ି;
ବେଗେ ବେଗେ ସିନା ଧାଇ ଚାଲି ଗଲେ,
ଏ ବନସ୍ତୁ ହେବା ପାର ।"

କହ୍ନୁ, ରେଗେ ବେଗେ ପାଦ ଗୁଳି ସଖୀ
ପାଛି ହେଉଛନ୍ତି ବନ;
ଚେତକ ଗୁଲନ୍ତି, ଅଜଗ ବନସ୍ଥ ଲୋ,
ଦେଶର ଅଖିଳ ଧନ ।

ନେହବଟେକୁଦେ ଗିଉଣ୍ଡି ତାଙ୍କର
କରୁ ତ ଥିଲେ ସ୍ୱଜୁତ;
ଧରଜା ଧାଉଛ, ଦୁଖୀ ଭିଖାରି ଲୋ,
ଢୋକି ହେଉଥାନ୍ତି ଖ୍ୟାତ ।

ଝଡ଼ଖାଇ ନଈ ବଢ଼ି ଦନକର
ନେଲା ସେ ଗଡ଼ ଭସାଇ,
ନୂଆ ଗଡ଼ ତହୁଁ ଉତ୍ତମ ଥାନେ ଲୋ,
ତୋଳିଲେ ରାଜନ ଯାଇ ।

'ସଡ଼େଇକଳା' ସେ ନାଆଁ ଦେଲେ ତାର,
ଜାଣନ୍ତି ଜଗତ ଲୋକେ;
ବୋଲୁଛନ୍ତି ସିନା 'ଷୋଡ଼ଶକଳା' ଲୋ,
ବାଙ୍କେ ଝଂସକୃତୀ ଥୋକେ ।

୨

"ଆମ ଗଡ଼ ପାଖେ ଗଡ଼ ନ ତୋଳିବେ
ସଡ଼େଇକଳା ରାଜନ"—
ଝରସୂଆଁ ରାଜ୍ୟ ନୃମଣି ସେଠେ ଲୋ,
ଗର୍ଜି କରୁଛନ୍ତି ପଣ ।

ଧୂଇ ଥାଚ ଭେଟି ବଣ ଦରବରେ
ହେଲିଲ ଟକୋଟେ ହଣାହଣି;

ମୁଣ୍ଡ ନେଣ୍ଡ କ୍ଷଣକେ ଦଣ୍ଡିଲେ ଯୁଟେଁ ଲୋ,
ସନ୍ତେଇକଲା ନୃମଣି ।

ଖରସୁଆଁ ଅଛି ଗାଆଁ ବାଲି ଟଣେ
ଖଣ୍ଡା ଧନୁ ଶର ଧରି,
ବୁଲନ୍ତି ଅନ୍ଧୋରଣେ, ସେ ରଜାଙ୍କର ଲୋ,
ବଇଁଶ ନପାତ କରି ।

ସେଥିପାଇଁ ରାଣୀ ଟିକି ପିଲାଟିକି
ବୁକୁରେ ପକାଇ ନକି,
ବଣ ପରବତେ ପଳାଉଛନ୍ତି ଲୋ,
ଇଷ୍ଟ ଦେବତାଙ୍କୁ ଡାକି ।

ଦେଢ଼ ବରଷର ଯେ ଟିକି ପିଲାଟି
କାଚ କୁଣ୍ଡେଇଟି ଧରି,
ଭୋକ ଶୋଷ ଖରା ବରଷା ପାଟେଇ ଲୋ,
ଯାଉଛି ଝାଉଁଳି ପଡ଼ି ।

ଡୁହାଇ ଡୁହାଇ କାନ୍ଦୁଛି ବନସ୍ତେ,
ମାଆ ଶୁଣୁଛନ୍ତି କାନେ;
ବାଘ ଭାଲୁ—ବଣ ଜନ୍ତୁଏ ଅବା ଲୋ,
ବୁଲି ଶୁଣୁଥିବେ ବନେ ।

"ତୁନି ହୁଅ, ଧନ", କହନ୍ତି ବିକଳେ,
"ସଞ୍ଜ ତ ଆସୁଛି ମାଡ଼ି,

ବେଗେ ବେଗେ ସିନା ପାଦ ଚଳିଲା ଗଲେ,
ଏ ବନସ୍ଥ ହେବା ପାଇଁ ।"

୨

କେତେ ଦନ କେତେ ରାତ୍ର ସେ ବନସ୍ଥେ
ପାଇ ତ ଗଲେଣି ଦୁଖେ;
କେତେ ଥର ମୂର୍ଚ୍ଛା ହଦୟୁ ହୋଇ ଲୋ,
ବୁଡ଼ିଲେ ପଣ୍ଡିତ ଶିଖେ ।
ତେବେ ହେଲେ, ଅଶ୍ରା କାହିଁ ଯେ ନ ମିଳେ
ମୁଣ୍ଡ ସେ ଗୁଞ୍ଜିବା ପାଇଁ;
ଚାଲି ଚାଲି ପାଦ ଗଲାଣି ଥକି ଲୋ,
ହୃଦରେ ଭରସା ନାହିଁ ।
ଯହିଁ ସେ ଯାଆନ୍ତି, କୋହଳ ମୁଣ୍ଡା ବନେ
କହନ୍ତି କାମୁଡ଼ି ଜଭ,
"ଏ ପିଲ୍ଲକୁ ଯେବେ ରଖିବୁ ଘରେ ଗୋ,
ମର୍ତ୍ତ୍ୟେ କି ରହିବ ଜୀବ ?
ପର ଲାଗି କେବେ ଅପଣାର ମୁଣ୍ଡ
ପାଣି କି ଛଡ଼ାଏ କେହି ?
ନିଜ ପୁଅ ଯେବେ ରଖି ନ ପାରୁଛ,
ବନସ୍ଥେ ଦଅ ପକାଇ ।"
ଦଶ ମାସ ଗର୍ଭେ ରଖିଥାଏ ଯେହୁ
ମାୟା କେ ବୁଝେ ତା ବିନେ ?
ଗାଁଅରୁ ଗାଁଅକୁ ଘେନି ପୁଅକୁ ଲୋ,
ରାଣୀ ଚାଲିଛନ୍ତି ବନେ ।

ଏକୋଇଶ କୋଶ ମୂଲକ ରାଣୀ ସେ,
ପାଦ ତ ନ ଲାଗେ ତଳେ;
କଣ୍ଟା ଖୁଣ୍ଟ ଆଜ ମାଡ଼ି ଚାଲନ୍ତି ଲୋ,
ଏଡ଼େ ସ୍ଥାନମାନଭରେ ।

୪

ରାଇରଙ୍ଗପୁର ସାଆନ୍ତ ନରେନ୍ଦ୍ର
ମୟୂରଭଞ୍ଜ ରାଇଜେ
ତିନ କୋଶ ପୃଥ୍ୱୀ ରାଜୁତି କରେ ଲୋ,
ଗରଜି କହନ୍ତି ତେଜେ—
"ନିଶଙ୍କେ ରହ, ମୋ ଆଜ୍ଞା ଖୋଜି ଯେବେ
ଆସିଛ ଦୁଆରେ, ରାଣି,
ହେଉ ଯାହା ହେବ, ତୁମ ଲାଗି ଦେଖ
ମୁଣ୍ଡ ଛଡ଼ାଇଲି ପାଣି ।
ଅଯୁତ ପରଜା ମଥାମଣି ହୋଇ
ମିଛେ କି ବସିଛୁ ପିଢ଼େ ?
ଏ ଗାଦିକି ପାନ ବୋଲାଇବ କେହ୍ନେ
ନାଶ୍ରିତେ ନ ରଖିଲେ ?"

୫

ରାଇରଙ୍ଗପୁର ପାଇକ୍ଷ ନରେନ୍ଦ୍ର
ଘରେ ରାଜଭୋଗେ ରହି
ଦିନୁ ଦିନ ବଢ଼ି ଠିକ ରଜାଣ୍ଠି ଲୋ,
ଦୁଖ ତ ଜାଣନ୍ତି ନାହିଁ ।

ନରେନ୍ଦ୍ର ବାବୁଙ୍କ କୁମର ସଙ୍ଗତେ
ପଢ଼ନ୍ତି ଗୃହାଳି ଘରେ;
ଭାଇ ବୋଲି ତାରେ ଲୋଡ଼ା ହେନେହେ ଲୋ,
ଖେଳନ୍ତି ସୁଖେ ତା ତୁଲେ ।

ବାପା ଦୋଲି ଡାକ ନରେନ୍ଦ୍ରଙ୍କୁ ମାଅ
ଘରଣୀରେ ସଇ ତାର.
କହନ୍ତି "ଭାଇ ରେ, ଜଣେ ସିନା ତୋର,
ଦେଖ, ଦୁଇ ମାଅ ମୋର ।"

୬

ଦନେ ପିଲଖେଳେ କଳା କରି ଆସି
କାନ୍ଦନ୍ତି ସେ କଇଁ କଇଁ,
ଲୁହ ବେନି ଧାର ବେନି ନେନ୍ଦରୁ ଝେ,
ବୁକେ ଯାଉଅଛି ବୋହି—

"କାହାର ପୁଅ ମୁଁ, କେଉଁ ଦେଶ ରଜା
ବାପା ମୋ ଏ ମନ୍ତ୍ରୀ କହ ।"
ବଇଶାଖ ପାଣି ପବନ ପ୍ରାୟେ ଲୋ,
ଉଠିଲା ରାଣୀଙ୍କ କୋହ—

"ବାପା ତୋ, ବାବୁ ରେ, ଏକୋଇଶ କୋଶ
ରାଇଜ ମଉଡ଼ମଣି;
ସେ ପରା ରାଜନ ଯୁଦ୍ଧେ ରେ ବଇରୀ
ବଅର୍ଥେ ଦେଇଛନ୍ତି ହାଣି ।

ଗଡ଼େ ପଶି ବଳେ ହରିଲ ସର୍ବସ୍ୱ,
ତଡ଼ିଲ ଭଗାରି ପଟଣେ;
କୋଳେ ତହୁଁ ତୋତେ ଧରି ମୁଁ, ବାବୁ ରେ,
ପଶିଲି ଏ ଘୋର ବନେ ।
ଧର୍ମ ଯେବେ ଥିବ, ବୁଝିବ ଦଇବ;
ତୁ ମୋର ବାହୁଡ଼ ପୁଅ
ଆଣିମ୍ବ ରାଇଜ ବଇରିଙ୍କଠାରୁଁ ରେ,
ମୁଁ ମର୍ତ୍ତ୍ୟେ ଟେକିବି ମୂର୍ଦ୍ଧ ।
ଉରବଟର ଗଡ଼ୁଁ ପଳାଇ ଆସିଲି
ବେଳେ ବାଳ ଗଲା ଫିଟି;
ସେ ବାଳ ତେମନ୍ତେ ମୁକୁଳା ଅଛି ରେ,
ତୁହି ସକାଇବୁ ଗଣ୍ଠି ।"

୭ ।

ଦଶ ବରଷର ବାହୁଡ଼ କୁମର,
ରାଣୀଙ୍କର ଗଣ୍ଠିଧନ,
ଶୋକେ ସେଷେ ଜଳି, ସିଂହ ଗର୍ଜ୍ଜନେ ଲୋ,
କମ୍ପାଇ କରନ୍ତି ପଣ—
"ବଇରୀ ମୋ ରାଜ୍ୟେ ନ ରହିବ, ମାଆ,
ମର୍ତ୍ତ୍ୟେ ଏ ଜୀବନ ଥାଉଁ;
ରହ ଏଥି ଏକା, ଯାଉଛି ମୁହିଁ ଗୋ,
ଭାଙ୍ଗିବ ବଢ଼ାଇ ଦାଉ ।
ତେବେ ଯାଇ ସିନା ପୋଛିବ ତୋ ନେତ୍ରୁଁ
ଏ ନେତ୍ର ଲୋତକ ଧାର;

ବଇରେରକତେ ବୁଡ଼ାଇ ହାତ ଏ,
ବାନ୍ଧିବ ମୁକୁଳା ବାଳ ।"

୮

"ନାହିଁ, ଅଭିରାମ," କହନ୍ତି ରାଣୀ ସେ,
"ଯାଉଛୁ, ବାବୁ, କ ହଉଛି !
ତୋ ପେନ ମତ୍ତ୍ୟେ ତ ରଖିଛୁ ଏ ଜୀବ,
ଛାଡ଼ିବ କେମନ୍ତେ ତୋତେ ?

ତୋ ଲାଗି ରୋପିଛୁ ଏ ଶାଳ ଗଜାଟି
ହାତେ ମୋ ବନସ୍ଥମାଳେ;
ନେଇବ ଲହ ଧାର ଡାଳ ମୂଳେ ନିତ,
ବଢ଼ାଇ ରଖିଛୁ ଭଲେ ।

ମୋ ଦୁଃଖ କାହାଣୀ, ବଇରିଗଞ୍ଜଣା
କେତେ ତାରେ ଅଛି କହି,
ଦେଖିଲୁ ପରଖି, ଓଃ ଆଉ, ବାବୁ ରେ,
ପାରୁ ତୁ ଅଛୁ କ ନାହିଁ ।"

୯

ଶାଳ ଗଜା ଧରି ଓଠାରନ୍ତେ, ଗଛ
ଟଙ୍କିଲା ନାହିଁ ତ ତଳେ,
ଅଭିରାମ ଥିରେ ଫେରି ଆସିଲେ ଲୋ,
କୋପ ଅମରଷ ଭରେ ।

ଗୃହେଁ ରହୁଥିଲେ, ଧଇଲେ ବାନ୍ଧୁତ
ପୁଏ କୋଳେ ଟେକେ ଟାଣି,

ଗଣ୍ଡେ ଚୁମ୍ବି ଦେଇ ଆଉଁସି ମଥା ଲୋ,
ଦେଲେ ଆଶ୍ୱାସନା ରାଣୀ ।
କହିଲେ, "ରହିଥା ତୁ ଆର ବରଷକୁ
ଦେଖିବୁ ପରଖ କରି ।"
ଆର ବରଷ ସେ ପରଖି ଦେଖି ଲୋ,
ଗଛ ନ ପାରିଲେ ଟାଣି ।
ଅଭିମାନେ ମୁଣ୍ଡ ପୋତି ହୋଇଗଲା
ଫେରିଲେ ମାଆଙ୍କ ପାଶ;
"ରହିଥା ତୁ, ବାବୁରେ", ବୋଧକଲେ ସେ ଲୋ,
"ପାରିବୁ ଆର ବରଷ ।"
ଦଣ୍ଡ କସରତ ମାଲ ଯୁଦ୍ଧ ଖେଳ
ଜାଣନ୍ତି ବାଳୁତ ଦିନ;
ପିଲା ଖେଳ, ପିଲା ସୁଖ ସୋହାଗ ଲୋ,
ନ ଜାଣନ୍ତି ଅଭିରାମ ।

୧୦

ପୂରିଲା ବରଷ; ମାଆ ଆସି ପାଶେ
ଡାକନ୍ତି, "ଉଠ ରେ ବାବୁ,
ଏ ବରଷ ନାହିଁ ଓପାଡ଼ିଲେ ଗଛ,
ଆଜ ତ ନ ଓପାଡ଼ିବୁ ।"
ହୁହୁଂକାର ଛାଡ଼ି ଟାଙ୍କନ୍ତି ବଳେ ସେ,
ଗଛ ମାତ୍ର ଗଲା ନଇଁ;
ସରଗର ଡାଳ ତଳେ ଲାଗିଲା ଲୋ,
ତେବେ ଉପୁଡ଼ିଲା ନାହିଁ ।

ଆଜ୍ଞ ଥରେ ଝାଙ୍କି ନରସ୍ତ ହୁଅନ୍ତେ,
ଭିଡ଼ିଲେ ଅବର ବଳେ;
କଢ଼ କଡ଼ ଡାକ ତନ ଥରକୁ ଲେ,
ଗଛ ସେ ଶୋଭାଳ୍ଲ ତଳେ ।

ପୁଅଟିରେ କୋଳେ ଧରି ରାଣୀ ବେଗେ
ଆଉଁସି ଦେଅନ୍ତ ଦେହ;
ନୟନ ଲୁହ ଧାର ବୋହି, ବଢ଼ିଲା ଲୋ,
ଅଧିକରୁ ଅଧିକ କୋହ—
"ପାରିବୁ ମୋ ମାନ ରଖି, ବାବୁ, ମରିଯା
ଯାଅରେ ସଇତେ ଫେରି;
ଏ ଶାଳ ଗଜାଟି କାଟି, ମୁଷଳ ରେ
ହାତେ ନେଇଥାଅ ଧରି ।

ପାଉଡ଼ୀ ମାଆଙ୍କ ଆଜ୍ଞା ମାଳ ଏଇ
ରଖ ରେ ମୁଣ୍ଡଲେ ବାନ୍ଧି;"
କହି ଏତେ, ମାଳ ପୁଅ ହାତକୁ ଲେ,
ରାଣୀ ବଢ଼ାଇଲେ କାନ୍ଦ ।

୧୧

ତେର ବରଷର ବାଳୁତ କୁମର
ଟିକି ଉଜା ଅଙ୍ଗସାମ
ଛାଡ଼ି ମାଆ କୋଳ ଯାଅନ୍ତେ, ହେଲ ଲୋ,
ବଳ ଦେହେ ଚଉଗୁଣ ।
ସାଇକୁଁ ସାଇକେ ଖେଲନ୍ତେ ସଜନ,
କଟେ ବଣ ପଦା ଗାଆଁ;

ପାଇକୁଁ ପାଇକ, ପିଲାଠୁ ବୁଢ଼ା ଲୋ,
ଛୁଣ୍ଡେ ଯୋଷିଦେଲେ ନାଆଁ ।

୧୨

ଶୁଣିଲେ ଦାକ୍ତ ନୃମଣି, ଦୂରସ୍ଥେ
ବସନ୍ତଭୂମ ସଇତେଜ
ରଜା ମରିଯାଇ, ବେନି କୁମର ଲୋ,
ମାରନ୍ତି ଭଗାରି ଯୁଦ୍ଧେ ।
ପରଜା ପାଇକେ କପାଳ ଆଦରି
ଲୁଚନ୍ତି ବନସ୍ତେ ଯାଇ;
ବୁଢ଼ା ଗଡ଼ ଗାଆଁ ମଡ଼ା ରକତେ ଟଳି,
ରହିଛି ଶୋଶାନ ହୋଇ ।
କହିଲା ରଜା ଏ, କେମନ୍ତ ସାଇଜ,
ଗାଜନ୍ତି ପରଜା ଜନେ,
ଭାଷି, ଅଭିରାମ ଆଟୋପେ ଦନେ ଲୋ,
ମିଳିଲେ ବସନ୍ତଭୂମେ ।
ନାହିଁ ମେଘ, କାହୁଁ ପଢ଼ିଲା ଚଡ଼କ !
କଥା ଅଚମ୍ବିତ ଅତ;
"ରକ୍ଷା କର" ବୋଲି, ବେନି କୁମର ଲୋ,
ଆସି କଲେ ପ୍ରଣିପାତ ।
ପିଲାଟିଏ ଧରି ଟିଆ କରିଦେଲେ
ଖଣ୍ଡ ହୁରେ ଅଭିରାମ;

ହସ ହସେ ମୁହଁ ଫାଳି ତା ପଡ଼େ ଲୋ,
ରୂପ ଠାଣି କ ଘଟଣ !
କହିଲେ, "ଝାଳିଲ ଏ ପିଲାର ମୁଣ୍ଡ
ଧରି ଧନୁଶର ଲଖେ;
ବଣହରିଣେ କେ ସଜୁତ କରିବ,
ଜଣା ପଡ଼ିଯିବ ଠିକେ ।"

୧୩

ଶୁଣି ବଡ଼ ଭାଇ ପୋତିଦେଲା ମଥା,
ହାତ ଗଲା ନାହିଁ ତାର;
ଭାଷିଲା, "କେମନ୍ତେ କହୁଛ ଏ କଥା,
ହୃଦୟ କରି ପଥର ?
ଏ ଶାଇଜେ ଦଛେ ନୋହିବ ସଜୁତ,
ବୁଲିବି ବନସ୍ତେ ଯାଇ;
ବନ ଚେରମୂଳ ଖୋଳିବି ଏ ହାତେ
ପେଟ ପୋଷିବାର ପାଇଁ ।"
ସାନ ଭାଇକ ସେ ତହୁଁ ଅଭିରାମ
କହିଲେ, "ହୁଅ ତଆର";
ଧନୁଶର ହାତେ ସେ ସାନ ଭାଇ ଲୋ,
ହେଲା ବେଗେ ଅଗଭର ।
ଭଉ ଗୁଣ ଟଳେ ବାନ୍ଧିଲା ଦୁରନ୍ତେ,
"ସାହା ମା ପାଉଡ଼ୀ" ଡାକ;
ଦେଖନ୍ତେ ଧାଇଁକ ପରଜାଙ୍କର ଲୋ,
ରୁକ ହୋଇଗଲା ଆଖି ।

ହେଲେ, ସାହା ତାର ନୋହିଲେ ଧାଉଡ଼ୀ,
ଫେହି ଲଖି ଗଲା ଏକା;
ଲାଜ ସେତେଷେ ଦେହ ଥରିଲା ଅତି ଲୋ,
ମୁହଁ ପଡ଼ିଗଲା ଫିକା ।

୧୪

ବଡ଼ ଭାଇଙ୍କ ସେ ଅଭିରାମ ତାଙ୍କୁ
କହିଲେ ପାଖକୁ ଯାଇ—
"ରଜା ହୋଇ ଏକା ଜନମ ପାଇଛ
ପରଜା ପାଳିବା ପାଇଁ ।
ରଜା ହୋଇ, ନୃପ, ବସିବ ଗାଦିରେ,
ପାଳିବ ପରଜା ଭଲେ";
କହି, ବନ୍ଧୁମାନେ ରାଜମୁକୁଟ ଲୋ,
ପିନ୍ଧାଇଦେଲେ ତା ଶିରେ ।
ବସି ବଡ଼ ଭାଇ କଲା କି କୁଶଳେ
ବରଷହୂମେ ରାଜୁତି;
ପରଜା ପାଇକ ଗୁଣ କୀରତି ଲୋ,
ଘୋଷି ହେଉଥାନ୍ତି ନିତି ।

୧୫

କେତେ ଦିନେ ପୁଣି ଦାସ ଜଗନ୍ନାଥ
କୁଚଙ୍ଗ ପିଢ଼ ପାଇଛି
ମେଳ କଲା ବସି ମୟୁରଭଞ୍ଜେ ଲୋ,
କେଜାଣି କି ହେଲା ଇଚ୍ଛା ।

ଯୁକ୍ତି ଧନୁ ଧାନ ସେ ଦେଶ ରାଜନ
ଙ୍କର ଦାମୋଦର ଭଞ୍ଜ,
ଦଣ୍ଡି ନ ତାରିଲେ ଦେଢ଼ ବରଷେ ଲୋ,
ପାଇଲେ ଅଖ୍ୟାତ ଲାଜ ।

ରାଜଙ୍କୁଁ ରାଇଜେ ଏ ମହୀମଣ୍ଡଳେ
ଉଡ଼ୁଛି କୀରତ୍ତି ବାନା—
ଖେଦେ କୋଣ ଦେଶେ କେ ଯେହ୍ନି ଅଛି ଲୋ,
ନୃପ ଅଭିରାମ ବିନା ?

ନୃପ ଅଭିରାମ ବିନେ କେ ପାରିବ
ଭାଙ୍ଗି ସେ କୁଚଙ୍ଗ ମେଳି ?
ଚଢ଼ି ସନମାନେ ନେଲେ କି ତାଙ୍କୁ ଲୋ,
ଭଞ୍ଜ ନରମଣି ଲୋଡ଼ି ।

ତନ ଦନ ତନ ରାତ ହେଲା ଯୁଦ୍ଧ
କମ୍ପିଲା ବନସ୍ଥ ଗାଆଁ;
ହାରି, ଜଗନ୍ନାଥ ଦଇନେ ଅତ ଲୋ,
ହାତ ଯୋଡ଼ି ହେଲା ଠିଆ ।

ବଡ଼ ଗୁଣଗ୍ରାହୀ ନୃପ ଦାମୋଦର
ମୟୂରଭଞ୍ଜ ରାଜନ;
"ଭଞ୍ଜ ବୃହସ୍ପତି" ରଚନ୍ତି ନାଆଁ ଲୋ,
ପରଜା ପାଇକ ଜନ ।

କହିଲେ, "ଏ ମର୍ତ୍ତ୍ୟେ ଶୁଣି କି, ନୃମଣି,
ପାରିବି ଏ ଉପକାର ?"

କହୁ, ହାତେ ଆଣି ଖୋଳନ୍ତି କେମାଙ୍କୁ ଲୋ,
ସମ୍ପିଦେଲେ ଦାଓମାଦର ।

ଦେଖିଲେ ସେ କୁଟେଙ୍ଗ ପିଢ଼ା ଝଲକୁଛ,
ଧନ ରତ୍ନ ଅସୁମାରି;
ହାତୀ ଘୋଡ଼ା ରଥ କିଏ ଗଣିବ ଲୋ,
ଚୌପାଶେ ଲମ୍ବ ଦଶେ ଧାଡ଼ି ।

ରଜା ରାଣୀ ହୋଇ କୁଟେଙ୍ଗ ନୃମଣି
ନିଶ୍ଚିନ୍ତେ କଲେ ରାଜୁତି;
ମୁହିଁ କି ବଖାଣି ପାରିବି ସାରି ଲୋ,
ତାଙ୍କ ଯଶ ଗୁଣ ଖ୍ୟାତ ?

୧୬

ଦିନେ ଅଭିରାମ ଶୋଇଛନ୍ତି ନିଦେ
କୁଟେଙ୍ଗ ପିଢ଼ ଉଆସେ;
ସପନେ ଶୁଣିଲେ, "ଉଠ, ମୋ ବାବୁ ରେ"
ମାଆ ଡାକୁଛନ୍ତି ପାଶେ ।

ଆଖିରୁ ଝାଉଛି ବୋହି ଲୁହଧାର,
ଫିଟି ଲୋଟୁଅଛି ଜୁଡ଼ା;
ଚମକ ତକ୍ଷଣେ ଉଠିଲେ ପୁଅ ଲୋ,
ଥରିଲା ଉଆସ ସାରା ।

କହିଲେ, "ବ୍ରତ ମୋ ନ ପୂରିଲା ଯାଏ
ଶୋଇ କି ପାରିବି ଥରେ ?"

କହୁ, ସେ ମେଲାଣି ଦେଇ ଉଆସୁଁ ଲୋ,
ଚାଲିଲେ ନିଶି ଅନ୍ଧାରେ ।

ଘୋଡ଼ା ଝାପୁ ନାଦେ ନାଗା ଗର୍ଜନେ
ଗରଜି ଉଠିଲା ବନ;
ନିଜ ଦେଶ ମାଟି ମାଡ଼ନ୍ତେ, ହେଲା ଟଳେ,
ଦେହେ ସିଂହ ପରାକ୍ରମ ।
ନିଜ ଦେଶ ନଈ ବଣ ପରବତ
ନେହେ ସେ ଦେଖିଲେ ଚାହିଁ;
କହିଲେ, "ଏ ପରା ରାଇଜ କେ ପାରେ
ବଇରିହାତକୁ ଦେଇ ?"
ରୂପ ତେଜ ଦେଖି ଚହଳି, ପରଜାଏ
ସମ୍ଭାଳି ନେଲେ ଆଦରେ;
"ବୁଢ଼ା ରଜାଙ୍କର ଠିକେ", କହନ୍ତି କେହେ,
"ସାଦୃଶ୍ୟ ଏ ମହୀତଳେ ।"
କପାଳକୁ ଦେଖି କେ କରେ ପ୍ରଶଂସା,
କେ ବୁକୁ, କେ ଅବା ବାହୁ;
"ଏ ସିନା ବୀର ତ", ପଡ଼େ ଚହଳ କେହେ,
"ଏ ମତୈର୍ଯ୍ୟ ନ ଥିଲେ ଆଉ ।"

୧୭

ଏ ସିନା ସମାନ ବୀର ବନେ କଏ
ରାଇଜ ଧାରବ ରଖି ?
ଥାପିଲେ ଗାଦିରେ ଅଭିରାମଙ୍କୁ କେହେ,
ପରଜା ପାଇକେ ଡାକି ।
"ଯାହା ଆଜ୍ଞା ହେବ ପାଳିବୁଁ", ରାଜନ,
ମହୀରେ ଏ ଦେହ ଧରି"—

ହାତ ଯୋଡ଼ି ଆସି ଲକ୍ଷେ ପ୍ରଜା ଟେଲି.
କହନ୍ତି ଗୁହାରି କରି ।
''ବୀର ବୋଲି ମୋର ପ୍ରଜାଏ ମର୍ତ୍ତ୍ୟେ
ଉଡ଼ାଉଥିଲ ତ ଛତି'',
କହନ୍ତି ବାହୁଡି ବୀର ରାଜନ ଟେଲି,
ଗର୍ଜନେ କମ୍ପାଇ କ୍ଷିତି—

''ସେହି ବୀରପଣ ଦେଲ କି ପାସୋରି
ସେ ଖ୍ୟାତି ବିଭବ ଶିରୀ ?
ସେ ବୀରରକତ ତୁମ ଶିରରେ ହେ
ନ ବହେ କି ଆଗପରି ?
ଆପଣା ରାଇଜ ପରହାତେ ସୁଖେ
ସମର୍ପି ତ ଦେଇଛ ଏବେ,
ପର ପରାଭବ ଗାଳି ଅପମାନ
ବୁଝି କି ନ ପାର ଲେବେ ?
ସିଂହପିଲା ହୋଇ ଶୃଗାଳ ପରାଏ
ରହିଛ କୋଠରେ ନିକି,
ନିଜ ଦେଶ, ନିଜ ଗାଆଁ ବନସ୍ତେ ଏ
ବଇରି ତାଣ୍ଡବ ଦେଖି ।
ଉଠ ବୀରେ, ଆଜି, ଧର ଧନୁଶର,
ଭେଟି ତ ବଇରୀ ଥାଟେ;
ଦେଖ, ବାହୁବଳେ କି କରି ପାରୁଛ
ମହାରଥନେ ବିପରୀତ ।

ତୁମ ବୀର ଡାକେ, ଲକ୍ଷେ ପାଦଘାତେ
ଥରିବ ବସୁଧା ଅଙ୍ଗ,
ଭୂଇଁକମ୍ପ ହେବ, ମେଦିନୀ ଫାଟିବ,
ପର୍ବତ ପଡ଼ିବ ଭାଙ୍ଗି ।
ଏ ମହାମଣ୍ଡଳେ, ବୀରେ, କେବେ ଦଣ୍ଡେ
ବର୍ତ୍ତି କି ପାରିବ ଅରି ?
'ଜୟ ମା ପାଉଡ଼ୀ' ସିଂହନାଦ ଛାଡ଼ି,
ଆସ ହେ ଯୁଦ୍ଧକୁ ଚାଲି ।"
"ଜୟ ମା ପାଉଡ଼ୀ"—ସିଂହ ଘୋର ରଡ଼ି
ଉଠିଲା ଆଠକୁ ଆଠ,
ଶୂନ୍ୟ ଥରହର ହେଲା, ଝଲିଲା ଲୋ,
ବଣ ପଦା ପରବତ ।

୧୮

ନାରାୟଣପୁରେ ଶୋଭିଲେ ରାଜନ
ଉତ୍ତମ ସୁନ୍ଦର ଗଡ଼;
ଘାଖେକେ ବୋହୂଙ୍କୁ ସଂଯୋଇ ନାଇ ଲୋ,
ପାଖେକେ ରଂଯୋଇ ଝୁର ।
ନ ସହିପାରିଲେ ଖରସୁଅଁ ନୃପ,
କହିଲେ ଅନୋଶେ ଜଳି—
"ନେର ବରଷ ଠୋକା ମୋରେ ଏଡ଼େ
ପାଇଛି ନଭନ କରି ।
ଏହି କଠୋରରେ ବାପ ତାର ଯୁଝେ
ମୋ ହାତେ ଖାଇଛି ହାଣ;

ବିନ୍ଧି ଅଛି ତାଙ୍କୁ ରାମ ହେଲା ଏଥେ
ତା ମୃତ୍ୟୁ ହୁଅଇ ଜାଣ ।"

କହୁ ଏତେ, ନୃପ ନାରଦୁଣ୍ଡରେ
ଆସିଲେ ସଇନ ଗୁଳି;
ଅଭିରାମ ଆଗେ ବାଢ଼ ଅଗୁଳି ଲୋ,
ଛତ୍ର ନିଜ ଥାଟ ଧରି ।

ହାତେ ଦେଇଛନ୍ତି ସେ ଶାଳ ମୂଷଳ,
ଭୀମର ଗଦା କି ସତେ;
ପାଗଡ଼ୀ ଦେବାଙ୍କ ଅଙ୍ଗୀ ମାଳକି ଲୋ,
ଉଡ଼ୁଛି ପବନ ଘାତେ ।

ସଇନେ ସଇନ, ପାଇକେ ପାଇକ
ହେଲେ ରୋଷେ ଲଢ଼ାଲଢ଼ି;
ରକତର ନଈ ବୋହୁଛି ଗଲା ଲୋ,
ମୁଣ୍ଡମାଳ ଗଲା ଗଡ଼ି ।

ହାତୀ ଘୋଡ଼ା କେତେ ପଡ଼ିଲେ କଛୁଡ଼ି
ଗର୍ଜନେ କମ୍ପାଇ ମହୀ;
ଭୂଇଁକମ୍ପ ହେଲା, ପୃଥ୍ୱୀ ଟଳିଲା ଲୋ,
ପର୍ବତେ ଗଲେ ଯେ ନଇଁ ।

ତେବେ ହେଲେ, ଯୁଦ୍ଧ ନ ଭାଜେ କଞ୍ଚିତେ,
ବରଷି ଯାଉଛି ଶର,
ଧନ ଆଠ ଦଉ ସୂର୍ଯ୍ୟକ[illegible]ଣ ଲୋ,
ଛୁଏଁ ନାହିଁ ମହୀତଳ ।

୧୯

ଖରସ୍ରୁଅଁ ନୃପ ଲୋକନାଥ ସିଂହ
ମୁକୁଟ ହୁରସ୍ତେ ଦେଖି,
ଘାତପିଣ୍ଡ ପ୍ରାୟେ ଅଭିରାମ ତ ଲୋ,
ଧାଆନ୍ତି ମୃଣ୍ଣଳ ଟେକି ।

ଗର୍ଜନ ଘୁଡ଼ନ୍ତି, ହୁହୁଙ୍କାର ରଡ଼ି,
କମ୍ପୁଛି ସ୍ତମ୍ଭ ପଡ଼ିଆ;
ଖଣ୍ଡେ ଦୂରେ ବୀରେ ବେକ ପାଞ୍ଚୁଣେ ଲୋ,
ହୋଇ ନ ପାରନ୍ତି ଠିଆ ।

ବଡ଼ ପାରଙ୍ଗମ ବୀର ବଳବନ୍ତ
ମର୍ତ୍ତ୍ୟେ ନୃପ ଲୋକନାଥ;
କଟାର ପଟକ ହାତେ ଥିଲେ କି ଲୋ,
ବାଘ ଘୁଡ଼ଦଏ ବାଟ ।

ଆଜି ସେ କଟାର ଧରି ହାତେ, ବୀର
ଥରି କହୁଛନ୍ତି ଡରେ —
"ଯମଦୂତ ପ୍ରାୟେ କେ ମାଡ଼ି ଆସୁଛି
ଏ ବୀର ଏ ମହୀତଳେ !"

ଅଭିରାମ ଟେକି ଧାଆନ୍ତି ମୃଷଳ,
ମୁଣ୍ଡେ କଣ୍ଠୁଡ଼ବେ ପରା;
ମୁକୁଟ ସେ ମୁଣ୍ଡୁଁ ଓହ୍ଲାଇ ହାତେ ଲୋ,
ଜୁଭା ଲୋକନାଥ ତୋରା ।

"ମାଇଲେ, ସ୍ୱଜନ, ବଇରୀରେ ପ୍ରାଣେ,
ଏ ମୁଣ୍ଡ ନୁଅନ୍ତ ସିନା;
ମୁଣ୍ଡରୁ ବଡ଼ ତ ଦେଉଛନ୍ତି ମୁକୁଟ,
କର ଏ ମିନତି ଧେନା ।

ଏହି କଟାରିରେ ନେଇଥିଲ, ନୃପ,
ବାପାଙ୍କ ଜୀବନ ଯୁଦ୍ଧେ;
ତୁମ ହାତେ ଏବେ ସମ୍ପୁଛୁ କଟାରି,
ରାଜୁତି କର ସାଇତେ ।"

୨୦

ପନ୍ଦର ବରଷ ପିଲା ଅଭିରାମ,
କି ତାଙ୍କ ବୁଦ୍ଧି ଚତୁର;
ମୁକୁଟ କଟାରି ନ ଛୁଇଁ ହାତେ ଲୋ,
ପଛରେ କଲେ ଜୁହାର ।

ଖୁଡ଼ୁତା ତାଙ୍କର ନୃପ ଲୋକନାଥ,
ସ୍ୱଭାବେ ପିତୃବ ପ୍ରାୟେ,
କୋଳେ ଧରି ବେଗେ ବାହୁତ ପୁଅ ଲୋ,
ନେତ୍ର ତନ୍ତ୍ରାଇଲେ କୋହେ—

"କୁଳକୁ ରତନ, ବାବୁ ଅଭିରାମ,
ରାଜୁତି କରିବୁ ଭଲେ;
ବଇରୀ ବିନାଶି, ପାଳି ପରଜାରେ
ଅର୍ଜିବୁ ଖ୍ୟାତି ମହୀରେ ।"

୨୧

ନାରାୟଣପୁର ଗାଦରେ ବସି ସେ
ରାଜୁତି କରନ୍ତି ପୁଅ,
ମାଆଙ୍କ ମୁକୁଳା ଜୁଡ଼ା ପକାଇ ଲୋ,
ନେନ୍ତ୍ରୁ ହାତେ ପୋଛନ୍ତି ଲୁହ ।

ସିଂହଭୂଇଁ ଦେଶେ ନାଆଁ ବାଜଗଲା
"ଧନ୍ୟ ରଜା ଅଭିରାମ";
ଉଧର ହୁଅନ୍ତି ଦେଶ ବଦେଶେ ଲୋ,
ପରଜା ପାଇକ ଜନ ।

ଢମାଡ଼, ଦଲମା, ଝରିଆ, ବାଙ୍କୁଡ଼ା,
ରାଞ୍ଚି, ସିମିଡ଼େଗା, ଠୁବା—
ଯେତେ ରାଜ୍ୟ ଥିଲେ, ସବୁରି ରଜା ଲୋ,
ପାଦେ ଆସି ହେଲେ ଭସ୍ମ ।

୨୨

ସିହଭୂଇଁ ଦେଶେ ପ୍ରଖ୍ୟାତ ବିଶେଷେ
ସରେଇକଲା ରାଇଜେ,
ସିହଭୂଇଁ ଦେଶ ସିହ ରାଜନ ଲୋ,
ଆଜି ହୋଇଛନ୍ତି ବିଜେ ।

ଆପଣା ପୂରୁବ ପୁରୁଷ କୀରତି
ପାସୋରି ଦେଲେଣି ହତେ !
ଖଣ୍ଡା ଧନୁ ଶର ପକାଇ ଦେଇ ଲୋ,
ଲେଖନ ଧରନ୍ତି ହାତେ ।

ଷଠଦଶୀ ଓଗାରଙ୍କ ପୂଜାରେ ବରଷୁଁ
ଛଅ ମାସ ଯାଏ ବ୍ରତ;
ତହୁଁ ସିନା ମର୍ତ୍ତ୍ୟେ ବୋଲନ୍ତି ରଜା ଲୋ,
ପ୍ରକଟ କରନ୍ତି ଖ୍ୟାତି ।

ଶଙ୍ଖମଲମଲ ପଥରର ଭଆସ
ଦଶେ କି ଘଟଣ ଅଦ୍ଭା !
ଚନ୍ଦ୍ରପାଣ ଭଙ୍ଗା କୁଡ଼ିଆ ଘର ଲୋ,
ଭୁଲାଇ ପ୍ରକଟେ ଶୋଭା ।

ଶଙ୍ଖ ଭେରୀ ତୁରୀ ବାଜା ବାଜେ ନିତ,
ଶୁଣି କି ପ୍ରସନ୍ନ ମନ !
ଦୁଖି-ଆର୍ତ୍ତିନାଦ କିଏ ଶୁଣେମ ଲୋ,
ମନ୍ଦିରେ ଏ ଭକ୍ତ ସ୍ଥାନ ?

ଦେବଳ, ଏ ବିଭବ କାଳ କାଳକୁ କି
ସଂସାରେ ହୋଇବ ସାର ?
ମିଛ ତ ନୋହିବ ଶାସ୍ତ୍ରର କଥା ଲୋ.
"ବୀରଭୋଗ୍ୟା ବସୁନ୍ଧରା ।"

---

# ପଦ୍ମାବତୀ

ପୂର୍ବେ ଓଡ଼ିଶା ରାଜାଙ୍କ ଅଧୀନରେ ଅଠେଇଶ ଗୋଟି ରାଜ୍ୟ ଥିଲା । ପ୍ରତ୍ୟେକ ରାଜ୍ୟରେ ଜଣେ ସାମନ୍ତ ରାଜା ଶାସନ କରୁଥିଲେ । ସାମନ୍ତ ରାଜାମାନେ ଓଡ଼ିଶା ରାଜାଙ୍କର ନାନା ପ୍ରକାର ସେବା କରୁଥିଲେ । କାଳକ୍ରମେ ସେଥି ମଧ୍ୟରୁ କେତେ ଗୋଟି ବାଜ୍ୟାପ୍ତ ହୋଇ ସାମନ୍ତ ରାଜ୍ୟ ସଂଖ୍ୟା ବୃଦ୍ଧି ପାଇବା ସଙ୍ଗେ, ଇଂରେଜ ଅମଳରେ ତହିଁରୁ କେତେ ଗୋଟି ଖାସ୍ ହୋଇଗଲା । ଶେଷକୁ ଛବିଶ ଗୋଟି ରାଜ୍ୟ ଗଡଜାତ ରାଜ୍ୟ ନାମରେ ରହିଥିଲା । ଏବେ ସେଥିରୁ ଦୁଇ ଗୋଟି ବିହାରକୁ ଚାଲିଗଲା ଓ ଚବିଶ ଗୋଟି ଓଡ଼ିଶାରେ ମିଶିଛି । ପ୍ରବାଦ ଅଛି, ପୁରୁଷୋତ୍ତମ ଦେବଙ୍କୁ କାଞ୍ଚି ଯୁଦ୍ଧରେ ସାହାଯ୍ୟ କରିବା ନିମନ୍ତେ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ପୁରୀ ବଡ଼ ଦେଉଳରୁ ବାହାରି ମନୁଷ୍ୟ ରୂପରେ ଘୋଡ଼ାରେ ବସି ଯାଉଥିଲେ । ଚିଲିକା ଓ ସମୁଦ୍ର ମିଶିବା ସ୍ଥାନକୁ ମାଣିକପାଟଣା କହନ୍ତି । ସେଠାରେ ଏକାଧିକ ଗ୍ରାମ ଅଛି । ତରତାରିଣୀ ପର୍ଯ୍ୟନ୍ତ ଗଞ୍ଜାମ ଜିଲ୍ଲାରେ; ପୁରୁଷୋତ୍ତମପୁର ନିକଟରେ । ସେଠାର ସର୍ବଜ୍ଞ ସେ ଅଞ୍ଚଳରେ ବିଶେଷ ପରିଚିତ ଥିଲେ । ପୁରୀ ବଡ଼ ଦେଉଳ ବେଢ଼ାରେ କଳ୍ପବଟ ମୂଳେ ପୁରୀ ନିକଟବର୍ତ୍ତୀ ବ୍ରାହ୍ମଣ ଗ୍ରାମମାନଙ୍କର ଅନେକ ବିଧବା ଏକାଦଶୀ ଦିନ ଏକତ୍ର ହୁଅନ୍ତି । ପୁରୀ ନିକଟରେ ଷୋଳ ଗୋଟି ପ୍ରଧାନ ବ୍ରାହ୍ମଣ ଗ୍ରାମ ବା ଶାସନ ରାଜାମାନେ ବସାଇଥିଲେ । ଏବେ ସବୁ ବ୍ରାହ୍ମଣ ଗ୍ରାମକୁ ଗୌରବରେ ଶାସନ କୁହାଯାଏ । ରଥଯାତ୍ରା ଦିନ ଓଡ଼ିଶା ରାଜା ପୁରୀ ବଡ଼ ଦାଣ୍ଡରୁ ଖଣ୍ଡେ ନିଜ ହାତରେ ଝାଡ଼ୁ କରୁଥିଲେ । ଏବେ ମଧ୍ୟ ନାନା ଅଘାତ ସତ୍ତ୍ୱେ ସେ ବିଧି ରହିଛି ।

୧

"ଆମ ଘର ଏହୁ ଓଡ଼ିଶା ରାଇଜେ,
ଫିରିଙ୍ଗି ତନ୍ତ୍ରରେ ରଜା;
ଘୋଡା ଦଶ ଜଣେ ରାଇଜ ଚୂଲେ ଲୋ,
କୋହିଏ ହେବେ ପରଜା ।"

ଅଜା ପିନା ଦେଶ ହ୍ରାନ ହୋଇଗଲା
ବଲ ବୁଦ୍ଧି କଉଶଲେ;
କେତେ ଖ୍ୟାତ, ଅହା, କାଲିହି ଥିରେ ଲୋ,
ଅଟକିଥିଲା ମହୀରେ ।

ପାଞ୍ଚଶ ବରଷୁଁ କିଛି ଊଣା ହେବ,
ଫିରିଙ୍ଗି ନ ଥିଲ ଆସି;
ସେତେବେଳେ ଥିଲେ ଓଡ଼ିଆ ରଜା ଲୋ,
ଓଡ଼ିଶା ରାଇଜବାସୀ ।

କେତେ ରଜାଙ୍କୁ ଯେ ବଳେ କରି ବଶ,
ହୋଇଥିଲେ ଗଜପତି;
ନାନା ଦେଶ ଜିଣି, ଟେକି ତ ଥିଲେ ଲୋ,
ମହୀରେ ଜୟ ଛତି ।

୨

ଗଜପତି ହୋଇ ରାଜୁତି କରନ୍ତି
ପୁରୁଷୋତ୍ତମ ରାଏ;
ରାଇଜର ସୀମା ଗଙ୍ଗାକୂଳରୁ ଲୋ,
ଥିଲା ଗୋଦାବରୀପାଏ ।

ଦକ୍ଷିଣ ଦେଶର କାଞ୍ଚି ବୋଲି ସେ ଯେ
ଅରେକ ରାଇଜ ପୁଣି;
ସେ ରାଇଜେ ଥିଲେ ଅନ ରାଜନ ଲୋ,
ସରଜା ମଜ୍ଡ଼ମଣି ।

ସଇନ ସାମନ୍ତ କେତେ ଯେ ତାଙ୍କର
କଳନା ନୋହିବ କର;
ଶହେ ଘର ହାତୀ ବାନ୍ଧିଥାଅନ୍ତି ଲୋ,
ସହସ୍ରେ ଘୋଡ଼ା ଅସ୍ତୁର ।

ପାଞ୍ଚ ପୁଅ, ପୁଣି ପଦ୍ମାବତୀ ବୋଲି
ଝିଅଟିଏ ରଜାଙ୍କର;
ପାଞ୍ଚ ପୁଅଯାକ ଭେଣ୍ଡା ବୟସ ଲୋ,
ଝିଅଟି ଷୋଳ ସତର ।

ପାଞ୍ଚ ପୁଅଯାକ ବିଭା ହୋଇଛନ୍ତି
ପାଞ୍ଚ ପାଟ ମହାଦେଈ,
ଦୂତ ପେଷିଛନ୍ତି ସୁନ୍ଦର ବର ଲୋ,
ଖୋଜିବାକୁ ଜେମାପାଇଁ ।

କେତେ ଦେଶ ବୁଲିଯାଏ ନିତି ଦୂତ,
ପାନର କରେ ଅନାସା;
ଶୁଣାଇ ଜେମାର ରୂପ ଗୁଣକୁ ଲୋ,
ଦେଶୁଁ ଦେଶେ ପରଶଂସା ।

୩

ଦିନେ କାଞ୍ଚି ରଜା ପାତ୍ର ମନ୍ତ୍ରୀ ଘେନ
ସଭାରେ ଅଛନ୍ତି ବସି;

ଓଡ଼ିଶା ରଜାଙ୍କ ଦୂତ ସେ କାଳେ ଲୋ,
ଛାମୁରେ କହିଲା ଆସି—
"ଓଡ଼ିଶା ରାଇଜ ଗଜପତି ବୀର,
ବାଇଶି ମୁଲକେ ରଜା,
ନିରଙ୍କୁଶ ହୋଇ ପାଳନ୍ତି କୁଶଳେ
ଅଢ଼େଇ କୋଟି ପରଜା ।

ସଇନ ସାମନ୍ତ କେତେ ଯେ ତାଙ୍କର,
କି ହେବ ତାର କଳନା ?
ହାତୀ ଘୋଡ଼ା ରଥ ଯୁଦ୍ଧବଳ ଯେତେ,
କୋଡ଼ି କୋଡ଼ି ହୁଏ ଗଣା ।

ଗଜପତି ହୋଇ ରାଜୁତି କରନ୍ତି
ପୁରୁଷୋତ୍ତମ ରାଏ;
ବାହୁବଳେ ଯାର ଗୋଦାବରୀଠାରୁଁ
ଜିଣିଛନ୍ତି ଗଙ୍ଗାଯାଏ ।

ଅଠେଇଶ ଜଣ ରଜା ତାଙ୍କ ତଳେ
ମାଡ଼ି ଅଠେଇଶ ଗଡ଼,
ଆଜ୍ଞା ପରମାଣେ ଖଟନ୍ତି ଶ୍ରୀଆଦେଶ;
ଏକୁ ଆନ ବଳିଆର ।

ମଣିମାଙ୍କୁ ହେଲା ଚବିଶି ବରଷ,
ରୂପକୁ ଉପମା ନାହିଁ;
ମନ କରିଛନ୍ତି ପଦ୍ମାବତୀଙ୍କର
ହାତ ସେ ଧରିବାପାଇଁ ।

ଗଜପତି ହୋଇ ରତ୍ନସିଂହାସନେ
ବସିବେ ମୂର୍ଖମଣି;
ଭିଆସ ତାଙ୍କର ଉଜଳ କରିବେ
କାଞ୍ଚିକେମା ସାଆନ୍ତାଣୀ !”

୪

ଶୁଣି ଦୂତକଥା, କାଞ୍ଚି ନରନାହା
କି ମନେ ପାଞ୍ଚିଲେ ସତେ;
ମହାରୋଷ ବହ୍ନି, ସଭାଭିତରେ ଲୋ,
ପ୍ରାଭଙ୍କ କଲେଟି ହୃଦତେ ।

ଦଣ୍ଡକେ ରାଜନ, କି ବିଧି ଘଟଣି,
କୋପେ ହୋଇଗଲେ ଭୋଳ,
ବାଡ଼ିଆ ପଠାଇଲେ ଦୂତହାତରେ ଲୋ—
“ରଜାକୁ କହିବୁ ତୋର ।

କୁଳାଙ୍ଗାର ସେହୁ ପୁରୁଷ ଅଧମ
ନୁହେଁ ଚଣ୍ଡାଳକୁ ସର;
ବଢ଼ାଇ କରିଛି ପଚଶି ମୂଲକେ
ରାଜୁତି କରୁଛନ୍ତି ବୋଲି ।

ଏତେ ଚଳାଙ୍କର ହାତୁଁ ସେ ରାଇଜ
କୃପାଣେ ଛଡ଼ାଇ ନେଲ;
ବଳ ଯେବେ ଅଛି, ଏ କାଞ୍ଚି ଗଡ଼କୁ
ଲଢ଼ାଇକି ଆସୁ ଭଲା ।

ପାଞ୍ଚ ପୁଅ ମୋର ପାଞ୍ଚ ମହାବୀର,
କାଞ୍ଚିର ପାଞ୍ଚ ରତନ;
ପଦ୍ମାବତୀ ପୁଣି ହିକ ଜେମାଟି ସେ
ରାଣୀଙ୍କର ଗଣ୍ଠିଧନ ।

ପାଞ୍ଚ ପୁଅଯାକ ବଣ୍ଟା କରାଇଛନ୍ତି
ପାଞ୍ଚ ଗଜପତି ଘରେ;
ଜେମାକୁ ମୋର ରେ ବର ନ ମିଳିଲେ,
ଦେବ ଶୃଗାଳ ହାତରେ;

ଗଜପତି ବୋଲି କହି ପଠାଇଛନ୍ତି,
ଏଡ଼ିକ ଗରବ ତାର;
ମନ ସେ କରିଛନ୍ତି ହାତ ଧରିବାକୁ
କାଞ୍ଚି ରାଜଜେମାଙ୍କର ।

ଭୁଇଁର ପତଙ୍ଗ ହୋଇ, ସେ ପାଞ୍ଚୁଛନ୍ତି,
ଉଡ଼ିବ ଗଗନେ ଯାଇ;
ପିମ୍ପୁଡ଼ି ଉଠୁଛନ୍ତି କି ସାହସେ ହାଯ
ଶୁଣ୍ଢାରେ ଚଢ଼ିବାପାଇଁ ।

ବିହି ବାମ ହେଲେ, କପାଳ ଫାଟିଲେ,
ଏ ବୁଦ୍ଧି ଆସଇ ମନେ;
ଏ ବଡ଼ାଇ ଫଳ, ବିଳମ୍ବ ନାହିଁଟି,
ତୁରନ୍ତେ ମିଳିବ ହନେ ।

କିଏ ନ ଜାଣଇ ଏ ମହୀମଣ୍ଡଳେ
କାଞ୍ଚିର ରଣ ବଳବ ?

ନୀ ହାତକୁ ଟେକଦେଲେ ମୋ ଜେମାକୁ,
କୁଳକୁ କଳଙ୍କ ହେବ ।

ଯାଅ, ଦୂତ, ମୋତେ ଯୁଦ୍ଧେ ଯେହ୍ନୁ ମାର,
କହିବୁ, ନେବା ଜେମାକୁ;
କାଞ୍ଚି ମହାରଜା ଜୀଇଥିଲାଯାଏ
ଝିଅକୁ ନ ଦେବେ ତାକୁ ।”

୫

ଶୁଣି, ମାନେ ଭାଜ କାଞ୍ଚି ଗଡ଼ୁଁ ଦୂତ
ଅଇଲା ରାଇଜେ ଫେରି;
ଗଜପତିଙ୍କର ସଭାଭିତରେ ଲୋ,
କହିଲା ସକଳ ପେଡ଼ି ।

“ଯୁଦ୍ଧ କରିବାକୁ ଲୋଡ଼ୁଛନ୍ତି ମୋରେ
କାଞ୍ଚି ଦେଶ ନରପଣି;
ଗଜପତି ହୋଇ ନ ଯିବି କେମନ୍ତେ ?”—
ଭାଷିଲେ ପୁରୁଷୋତ୍ତମ ।

ତକ୍ଷଣେ ରାଜନ ରାଇ ବିଶୋଇରେ
ଖବର ଦେଲେ ପଠାଇ,
ଶହେ ଧବ ହାତୀ, ତିନଶ ଘୋଡ଼ା ଲୋ,
ସଜିଲ କରିବା ପାଇଁ ।

ପାଇ ଅଜ୍ଞା, ବେଗେ ଅଣି ଦଣ୍ଡପାଠ
ତହିଁ ସଙ୍ଗେ କଲା ଠୁଳ

ଦଶ ଘୋଡ଼ା ରଥ, ତହ୍ମି ସଇନ ଟେଲ,
ତ କୋଡ଼ି ଦଶ ହଜାର ।

ଗର୍ଜି ସେ କହନ୍ତି, "କାଞ୍ଚି ଦେଶ ରଜା
ଦେଖିବା କେମନ୍ତ ଜନ;
ଅଲଭ୍ୟେ ଆମ ଏ ଚୂଡ଼ାମଣୀଙ୍କି
ଦେଲା ଏବେ ଅପମାନ ।

ମର୍ତ୍ତ୍ୟେ ତ ସାମାନ୍ୟ ନୁହନ୍ତି ଅଟଇ
କୋଟି ପରଜାଙ୍କ ନାହା;
ତାଙ୍କ ଛୁଲେ ଯେହୁ କଳା ଭଆଇବ
ମହୀରେ କେ ତାର ସାହା ?

ହାତ ସାଗାରେ ଡୁବାଇଲେ ଏବେ
ଜାଣନ୍ତେ କାଞ୍ଚି ସଜନ;
ମହାବଳ ନଦେ ଶୋଇଥିଲା, ଟିକେ,
ତାକୁ ଉଠାଇଲେ ଜାଣ ।"

୬

କାଞ୍ଚି ଦେଶ ରଜା ଅମାନ୍ୟ ହେଲେ ଯେ
ଓଡ଼ିଶା ମହାରଜାଙ୍କୁ;
ଓଡ଼ିଆ ସଇନେ ଗୁଳନ୍ତି ଏବେ ଟେଲ,
କାଞ୍ଚି ଗଡ଼ ଜିଣିବାକୁ ।

ଗର୍ଜି ଗୁଚଲେ ଅଟେଗ ମହାରଜାଙ୍କର
ଦଶଘୋଡ଼ାଲଗା ରଥ;

ଶହେ ଘର ହାତୀ, ତିନଶ ଘୋଡ଼ା ଲୋ,
ତା ମଛକୁ ସଂଯୁକତ ।
ଦଶ ଟୋଠା ରଥ, ସଇନ ସାମନ୍ତ
ଦ କୋଢ଼ ଦଶ ହଜାର,
ମୁଣ୍ଡମାଳ ଖାଲି ଗଣି ତ ନୋହେ ଲୋ,
ପଛେ ଗୁଳିଛନ୍ତି ତାର ।

ସଙ୍ଗଙ୍କ ଦଳକୁ ବେନ ସାମନ୍ତେ ସେ
ଜଗନ୍ନାଥ ବଳଦେବ;
ବେନ ସାମନ୍ତଙ୍କ ବଳ କଳକୁ ଲୋ,
ମହାଦେ କେ ସରି ହେବ ?

ଅଗଭର ହୋଇ ସେ ବେନ ବୀରେ ତ
ଘୋଡ଼ା ମାରି ଗଲେ ଥରେ;
ପାଖେକେ ଚିଲିକା; ଆନ ପାଖକୁ ଲୋ,
ଗର୍ଜୁଛି ସମୁଦ୍ର ବଳେ ।

ଗୁଁଇ ଗୁଁଇ ଖଗ ମାରେ ବାଲି ବନ୍ତେ,
ବୁଡ଼େ ବଇଶାଖ ଝାଞ୍ଜି;
ଭେକେ ଶୋଟେ ହଂସା ଉଡ଼ିଯାଉଛି ଲୋ,
ଆଶ୍ରା ତ ନ ମିଳେ ଖୋଜି ।

ଅଇଲା ଶେଷକୁ ଗଡ଼ଜୁଣୀ ବୋହି,
ମାଣିକ ନାଆଁଟି ଖ୍ୟାତ;
ଦହି ବିକିବାକୁ ବୋଝ ସେ ମୁଣ୍ଡେ ଲୋ,
ମୁଣ୍ଡାଇ ଗୁଲୁଛି ବାଟ ।

ରହି ମୁଦି ବନ୍ଧା, ଥୋଇଦେଲା ତୋଣ୍ଡ,
ଖାଇଲେ ସେ ବେନି ଗାଲେ ;
ପୁଣି ଘୋଡ଼ା ମାରି ଉଡ଼ି ତ ଗଲେ ଚଳେ,
ବନ୍ଦୁଁ ବନ୍ତେ ବେଗଭରେ ।
ସେହୁ ମୁଦ ପୁଣି ଆପଣେ ରାଜନ
ହଇନ ସାମନ୍ତ ଧରି,
ଦେଖାଇ, ମାଣିକ ମୂଲ ଯାଇଲା ଚଳେ,
ପଧର ଦୋପଠ କରି ।
'ମାଣିକପାଟଣା' ବୋଲି ଗାଆଁ ତହିଁ
ବସାଇ ରାଜନ ଗଲେ;
ପାଖେକେ ଶଲ୍‌କା, ଆନ ପାଖକୁ ଚଳ,
ଗର୍ଜୁଛି ସମୁଦ୍ର ବଳେ ।
ମାଣିକପାଟଣା ନାମ ସେହୁ ଦିନୁ
ପ୍ରଖ୍ୟାତ ଏ ମର୍ତ୍ତ୍ୟ ଜାଣି;
ଧରି ଗୁଲୁଣିରେ ନେଇ ଧାଇଁବା ଚଳେ,
ଦଶ କୋଶ, କଲେ ମନେ ।
ମନ କରି, ନୃପ ଦମ୍ଭ ବାନ୍ଧିଣିଆ
ଶାହି ନେଇଥିବେ ଛୁଟଲ;
ଏକୋଇଶ ଦିନ କୋଡ଼ିଏ ରାତି ଚଳେ,
ବାଟେ ଲାଗିଗଲା ପ୍ରେନ ।

୨

ଲାଞ୍ଛୁ ଗଡ଼ଠାରୁ କୋଶେ ଦୂର ଛାଡ଼ି
ରହିଲେ ମଦନ ଦଳ:

ଦୂତ ହାତେ ଦେଇ ଯୁଦ୍ଧ ପତକା ଲୋ,
ପଠାଇଦେଲେ ଖବର ।

ଦେଖି ଅର୍ଜୁନକେ, କାଞ୍ଚି ରଜାଙ୍କର
ଶତେ ଦକା ଗଲା ମାଡ଼ି;
"ଓଡ଼ିଆ ସଇନେ ବଡ଼ ଦୁର୍ଦ୍ଦଣ୍ଡ" ଲୋ,
ଚହଲ ଗଲା ଦେଶ ପଡ଼ି ।

ସେ ଦିନ ମଣିମା ଗାଳି ଦେଇଥିଲେ
ଓଡ଼ିଶା ଦେଶ ରଜାଙ୍କୁ;
ଓଡ଼ିଆ ସଇନେ ଆସିଛନ୍ତି ଏବେ
କାଞ୍ଚିଗଡ଼ ମଣିମାଙ୍କୁ ।

କାଞ୍ଚି ଗଡ଼ଯାକ ଏକଥା ଦଣ୍ଡକ
ହେଲା ତୁଣ୍ଡୁଁ ତୁଣ୍ଡେ ସ୍ୱର;
ମୁହୂର୍ତ୍ତେ ନ ଠାଳି, ସଇନ ସାମନ୍ତେ
ଯୁଦ୍ଧକୁ ହେଲେ ତଆର ।

ତହିଁ ଆର ଦିନ ସିନ୍ଦୁରା ନ ଫାଟୁଁ
କାଞ୍ଚି ଯୁଦ୍ଧ ପଡ଼ିଆରେ,
ସେନ ଦଳ ବଳ କାଞ୍ଚିରାଜାନ ଲୋ,
ମିଳିଲେ ମନ୍ଦା ସନ୍ଧାରେ ।

ପାଇ ସେ ବାରତା, ଓଡ଼ିଶା ନୃମଣି
ନିଜ ସଇନଙ୍କୁ ଧରି,
ପଡ଼ିଆରେ ଆସି ଠିଆ ହୁଅନ୍ତେ ଲୋ,
ଥରିଗଲା ବସୁନ୍ଧରା ।

ନିଶାଣେ ଜଣାଇ ଜଣୁଁ ଜଣେ, ଯୁଦ୍ଧ
ଚଳାଇଲେ ବେନି ବୀରେ;
ବେନି ସଇନେ ଯେ କେହ୍ନ କାହାକୁ ଲୋ,
ଊଣା ତ ନୁହନ୍ତି ତଳେ ।
ହାତୀ ଭୁଲେ ହାତୀ, ଘୋଡ଼ା ଭୁଲେ ଘୋଡ଼ା,
ରଥର ଭୁଲକୁ ରଥ,
ମାଲ ଭୁଲେ ମାଲ ଯୁଦ୍ଧ କରନ୍ତି ଲୋ,
ସାମନ୍ତ ଭୁଲେ ସାମନ୍ତ ।
କାହିଁ ଗଡ଼ାଗଡ଼ି, କାହିଁ ମରାମର,
ହଣାହାଣି ପୁଣି କାହିଁ;
ରକ୍ତନଦୀ ଠିଠେ ବହି ତ ଗଲା ଲୋ,
ଧରିତ୍ରୀ କମ୍ପଇ ଗୁହିଁ ।
ଦେଖି ଅଣୀ ଶବ୍ଦ ଗଡ଼ ଲୋକଙ୍କର
ବୁଜି ହୋଇଯାଏ ଆଖି;
ଘରେ ଘରେ କାଞ୍ଚିଗଡ଼ ଘରଣୀ ଲୋ,
କାନ୍ଦୁଛନ୍ତି ନତମୋଣୀ ।
ବୁଢା ବୁଢା ଲୋକେ କହନ୍ତି ଚତୁର,
"ଏଭଳି ଯୁଦ୍ଧ ତ ଥରେ
ହୋଇ ନାହିଁ ଗଡ଼ ବସିଲା ଦିନରୁ
କାଞ୍ଚିଗଡ଼ ଚଉଆରେ ।"

୮

ଏହିପ୍ରାୟେ ନିତି ହୁଏ ହଣାମରା,
ଦିନ କଟିଯାଏ ସିନା;

କାର ଜିଣା ହେବ, କିଏ ହାରିବ ଲୋ;
ଲଟବ ନ ପଡ଼ୁଛି ଜଣା ।

ଦିନେ ଥରହରେ କାନ୍ଦି ରାଜନଙ୍କୁ
ମନ୍ତ୍ରୀ ଜଣାଇଲା ଯାଇ—
"ସ୍ୱାମୀଙ୍କ ବକସି ଅକସ୍ମାତେ ଆଜି
ଗଲେ ଯୁଦ୍ଧେ ହାଣ ଖାଇ ।

ଶହେ ଘର ହାତୀଭିତରୁ ଆଜ ତ
ଅଛନ୍ତି ତିରିଶି ଘର,
ସାତ ଶହ ଘୋଡ଼ା ହାଣ ଖାଇଲେଣି;
ଏଥକୁ କିସ ବିଚାର ?

ସଇନ ସାମନ୍ତ କେତେ ଯେ ଗଲେଣି,
ନୋହିବ ତାର କଳନା;
ଓଡ଼ିଶା ରଜାର ଦଳବଳ ସବୁ
ଅଳ୍ପ ହୋଇଥିବ ଜଣା ।"

୯

ଶୁଣି ନୃପ ଚଳ ଉପରକୁ ଚାହିଁ
କି ଭାବିଲେଣି କଲେ ବସି;
ବାଇ ହୋଇଗଲେ ଦଣ୍ଡକ ପାଇଁ ଲୋ,
ଆଖି ହୋଇଗଲା ଖୋସି ।

ଉଠିଲେ ଭାଜନ ମନୁ ଆଜି ଯୁଦ୍ଧ
ଚାଲିବା ବିଚାର ସ୍ଥିର,

ନିଜେ ଗଜପତି-ସ୍ୱାମିଣି ଗଲେ ଲୋ,
ସନ୍ଧି ବଇରେଖ ଧରି ।

ଦଇନେ ଜେମାଙ୍କୁ ସେ ଗଜପତିଙ୍କ
ହାତେ ସମରପି ଦେଇ,
''ଏତିକରେ ଯୁଦ୍ଧ ବନ୍ଦ କର ନୃପ!''
ଜଣା କଲେ କାଞ୍ଚିସାଇଁ ।

ସେତିକରେ ଯୁଦ୍ଧ ବାଧ କରିବାକୁ
ତୁରିତେ ଅନୁଜ୍ଞା କରି,
ଓଲଗି କହନ୍ତି କାଞ୍ଚି ରଜାଙ୍କୁ ଲୋ,
ସେ କାଞ୍ଚିରାଜ-ବଇରୀ—

"ଘେନା ନ କରିବ ପିଲା ବୟସର
ମୋର ଅପରାଧମାନ;
ଅରି ହେଲେ, ମୋରେ ମଣିବ, ମଣିମା,
ଆପଣା ପୁଅ ସମାନ ।

ଏ କାଞ୍ଚି ରାଇଜେ ନିଶ୍ଚିନ୍ତେ, ପ୍ରଭୁ ହେ,
ରାଜୁତି କରିବ ଭଲେ;
ମୋ ଦୂର ରାଇଜକୁଁ ଲେଉଡ଼ାବେଳେ ଆଶୁ-
ଥିବଟି ଡକାଇ ମୋରେ ।

ଜେମାଙ୍କୁ, ରାଜନ, ଘେନ ତ ଆଜିଠୁ
ସଙ୍ଗତେ ମୋ ରାଇଜକୁ;
ଏତକ, ସ୍ୱମୁରେ ଦୋଷ ନ ଘେନିମ,
ଋଣୀ ମୁଁ ନୋହିବ ତାଙ୍କୁ ।

ଚଣ୍ଡାଳହାତ ଏ ଧରିବେ ଦୁଲାଳୀ
ପଣ ମୁଁ କରିଛି ରୋଷେ;
ନଜେ ସେହି ହାତ ଧରିଲେ ଏବେ ମୁଁ
ଅଖ୍ୟାତ ଅର୍ଜିବ ଦେଶେ ।"

୧୦

ସାର କଥାଗୁଡ଼ା ମାଗିଲେ ମେଲାଣି
କାଞ୍ଚି ଗଡ଼ ଅଧିପତି;
ନରଙ୍କୁଶ ହୋଇ କାଞ୍ଚି ରାଇଜେ ଲୋ,
ଫେଣିକ କଲେ ସଜୁତି ।
ଦୁଇ ଶହ ଘୋଡ଼ା, ତିନ କୋଡ଼ି ହାତୀ,
ସଇନ ଅୟୁତ ଗଣି
ଗଡ଼େ ତାଙ୍କ ଘୋଷିଦେଲେ ସମ୍ମାରେ ଲୋ,
ଓଡ଼ଶା ରାଇଜମଣି ।
ଦୁଖ କ ନ ହୋଇଥିବ, ଜେମାଙ୍କୁ ସେ
ମନ୍ତ୍ରୀ ହାତେ ସମ୍ପିଦେଇ,
କହିଲେ, "ଏହାଙ୍କୁ ଚଣ୍ଡାଳ ସଙ୍ଗତେ
ଦେବ ହେ ବିଭା କରାଇ ।"

୧୧

ଜଟି, ଅରହନ ବଢ଼ ପାହାନ୍ତିରୁ
ଓଡ଼ଶା ରାଇଜଣିରି
ଦେଶେ ଫେରିବାକୁ ବଜେ ହୋଇଲେ ଲୋ,
ଦଳ ବଳ ଥାଟ ଧରି ।
ଭେଟି ବାଟେ ଭଗବତୀ ଚାରେଣୀ ପର୍ବତ,
ବାସ୍ତିକା ରହିଲେ ଦିନେ,

ଖଣେ ଚଢ଼ି ଦେବୀ ଦର୍ଶନ କଲେ ଲୋ;
ଭଗତ ପ୍ରସନ୍ନ ମନେ ।
ଗଡ଼ ଖଣ୍ଡେ ଦୂର ବସାଇଲେ ଗାଆଁ
ବାସ୍ତୁ ରକ୍ଷିକୁଲ୍ୟା କୂଳେ;
'ପୁରୁଷୋତ୍ତମପୁର' ନାଆଁ ତା ଅଜି ଲୋ,
ପ୍ରକଟ ଏ ମହୀତଳେ ।
ସେହି ପୁରୁଷୋତ୍ତମପୁରୁଁ ନରମଣି
ଅଟୋପେ ଚିମଳଣି ହୋଇ,
ପୁଣି ଗ୍ଭଲ ଥାଟ ଗ୍ଭଲିଲେ ବାଟେ ଲୋ,
ବଣ ଘାଟି ପଦା ଡେଇଁ ।

୧୨

କେତେ ଦନେ ନୃପ ପ୍ରବେଶିଲେ ଆସି
ଅପଣା ଗଡ଼ ଦୁଆରେ;
ଗଡ଼ ଲୋକେ ତାଙ୍କୁ ଜନ୍ଧାଇ ନେଲେ ଲୋ,
ପୂଜି ନାନା ଉପଗ୍ଭରେ ।
ବୋହୂମାନେ ଦେଲେ ହୁଳହୁଳି ଘରେ,
ବାଜଇ ବାଇଦ ବାଣ୍ଡେ,
ଗାଆଁ ଗଡ଼େ ଦୀପ ଜଳିଲା, ଭାଟେ ଲୋ,
ପ୍ରଶଂସା ଗାଇଲେ ତୁଣ୍ଡେ ।
ବ୍ରାହ୍ମଣେ ଆସିଲେ କରି ଅଶୀର୍ବାଦ,
ଧନ ବସ୍ତ୍ର ଦେଲେ ଧନୀ—
କାଞ୍ଚି ଗଡ଼ ଜିଣି ବାହୁଡ଼ିଛନ୍ତି ଲୋ,
ଓଡ଼ିଶା ମଉଡ଼ମଣି ।

୧୮।

ବସି ସିଂହାସନେ ବୁଝିଲେ ରାଇଜ
ନ୍ୟାୟେ ନୃପ ଗଜପତି;
ଆପଣା ଜୟସେ ଦେବ୍ୟ ବଣୀଙ୍କି ଲୋ,
ରଖିଲା ନେଇ ସେ ମନ୍ତ୍ରୀ।

ଆଣିଥିଲେ ସଙ୍ଗେ ଯତ୍ନରୁ କର
ଗଣେଶ ଗୋପାଳ ବେନି;
ଗୃଉଳ ଗୋଟିକେ ଗଢ଼ା ବେନି କ ଲୋ,
ଶୋଭା କେ ବର୍ଣ୍ଣିବ ପୁଣି ?

ପଥର ଖୋଦାଇ, ସେ ଜଇଥିଲା ପ୍ରାୟେ
ଦିଶନ୍ତି ଉଜ୍ଜଳ ନାକ;
ଅଙ୍ଗୁଷ୍ଠାଳ ଅବା ଚୋହ୍ନ ପଡ଼ୁଛି ଲୋ,
ଜୁଳୁଜୁଳୁ ଦିଶେ ଆଖି।

ମାଳାଚଳେ ବଡ଼ ଦେଉଳ ବେଢ଼ାରେ
ଦକ୍ଷିଣ ଦୁଆରେ ମୁହେଁ
କଳ୍ପବଟ ମୂଳେ ରଖିଲେ ଥାପି ଲୋ,
ଗଣେଶ ପ୍ରତିମା ଦୁଏ

ସେହି କଳ୍ପବଟ ଏ ମର୍ତ୍ତ୍ୟମଣ୍ଡଳେ
ପତିତପାବନ ଠିକେ;
ଛାଇତଳେ ତାର ବସିଲେ ଦଣ୍ଡେ ଲୋ,
ସ୍ୱର୍ଗକୁ ଯାଆନ୍ତି ଲୋକେ।

ଏବେ ତହିଁ ଦିନ ବାଦ ପଡ଼ି ବସି,
ଖୋଲା ଶାହାଦନ ଖଣ୍ଡେ

ଗାଆଁ ଗଣ୍ଡା ଢାଇ ବୁଲିଗଲି ଏକା ଲୋ,
କାର କହୁଛନ୍ତି ଭୁବନ୍ତେ ।
ଶୁଣୁଛନ୍ତି ବସି ଦେଉଳେ ଗଣେଶ,
ହେଜି ରଖୁଛନ୍ତି ମନେ;
ତୁଳି ଦୋଷ ଗୁଣ, ଯମ ରଜାକୁ ଲୋ,
କହିବେ ମରଣ ଦିନେ ।
ଗୋପାଳେ ପୁଣି ସେ ସତ୍ୟବାଦୀ ପୀଠ
ଗୁପ୍ତ ବୃନ୍ଦାବନେ ବସି,
ତମାଳ ଛାଇରେ ବଉଳ ଫୁଲେ ଲୋ,
ହେଉଛନ୍ତି ଫୁଲଶାୟୀ ।
ତାଙ୍କ କଥା ଆଉ ଦିନେ ମୁଁ କହିବି,
ବେଳ ତ ନାହିଁଟି ଅଜି,
ଶୁଣ, ମନ୍ତ୍ରୀ ଘରର ସେ ପଦ୍ମାବତୀ ଲୋ,
କାନ୍ଦି ପଡ଼ିଗଲେ ଭାଜି ।
କହିଲେ, "ବିଧାତା, ଏହି ଦଶା ସତେ
ଲେଖି କି ଥିଲ କପାଳେ ?
ଜୀବ ଥାଉଁ ପୁଣି ହାତଟେକି ମତେ
ପଡ଼ିବ ଚଣ୍ଡାଳ ତୁଳେ !"

୧୪

କେତେ ଦିନକୁ ସେ ଜଗନ୍ନାଥଙ୍କର
ହୋଇଛି ଗୁଣ୍ଡିଚା ବିଜେ;
ସୁନା ଝାଞ୍ଜୁଣିରେ ଛେରା ପହଁରା ଲୋ,
କରନ୍ତି ରାଜନ ନିଜେ ।

ଶ୍ରୀଅଙ୍ଗୁ ବୋହୁଛି ଝାଳ ଗମଗମ,
ଶୁଖିଛି ବଦନ ଠାଣି;
ଚଣ୍ଡାଳରୁ ବଳି ଧୂଳିଧୂସର ଲୋ,
ଓଡ଼ିଶା ମଉଡ଼ମଣି ।
ଏତେକବେଳକୁ ଖଳ ମନ୍ତ୍ରୀ ଜଣା—
"ଯାମ୍ଭ ଆଜ୍ଞା କରିଥିଲେ,
ପଦ୍ମାବତୀଙ୍କି ଏ ବଗ୍ର ଦେବା ପାଇଁ
ଚଣ୍ଡାଳ ପିଲାର ଭୁଲେ ।
ନଜେ ଯାମ୍ଭୁ ଏବେ ଚଣ୍ଡାଳର କୃତ୍ୟ
କର ହେଉଛନ୍ତି ଦଣ୍ଡ'';
କହ ଏତେ, ଚଦଲ ପଦ୍ମାବତୀଙ୍କି ଲୋ,
ଶ୍ରୀକରେ ବଢ଼ାଇ ଡୋର ।
ବେଳ ହାତ ପାତି ନରମଣି ତାଙ୍କୁ
କଣ୍ଠେ ପକାଇଲେ ଧରି;
ଲୁହ ଦୁଇ ଧାର ନୟନଯୁଗଳୁ ଲୋ,
ବୋହିଗଲା ପାଣି ପରି ।
ପଣ୍ଡା ପଡ଼ିଆରୀ ଯାତ୍ରୀ ବେଠିଆ ସେ
ଯେତେ ପୁରସ୍ତ୍ରୀ ଲୋକ
ଦେଲେ ହାତତାଳି, ଉଚ୍ଛୁଳି ପଡ଼େ ଲୋ,
ନୀଳାଚଳ ପୁରୀଯାକ ।
ଗଜପତି ହୋଇ ସୁବର୍ଣ୍ଣ ଗାଦିରେ
ବସିଲେ ପୁରୁଷମଣି;
ଜୟାସ ତାଙ୍କର ଉଜଳ କଲେ ଲୋ,
ପଦ୍ମାବତୀ ପାଟରାଣୀ ।

# ଅର୍ଜୁନ ସିଂହ

କୋଲ୍ହମାନେ ଅନାର୍ଯ୍ୟ ଜାତି, ଦେଖିବାକୁ କଳା; ଆଗେ ଅସ୍ତ୍ରରେ ତୀର ବାନ୍ଧୁଥିଲେ, ଏବେ ଲୁଗା ପିନ୍ଧିଲେଣି । ସୁବିଖମାନେ ପୂର୍ବ ଅନାର୍ଯ୍ୟ ନ ଥିଲେ । ସେମାନେ ସିଂହଭୂମରେ ଅନେକ ପୋଖରୀ ଖୋଳିଥିଲେ । ଶିଙ୍ଗ ବୁଙ୍ଗା କୋଲ୍ହଙ୍କ ଦେଓଁ । କୋଲ୍ହମାନେ ପ୍ରତିମା ପୂଜା କରନ୍ତି ନାହିଁ; ପାଞ୍ଚ ସାତଟି ଗଛ ଏକାଠି ଥିଲେ ସେଇଠାରେ ନିରାକାର ଶିଙ୍ଗ ବୁଙ୍ଗାକୁ ପୂଜା କରନ୍ତି । ଏହିପରି ପାଞ୍ଚ ସାତ ଗଛ ଏକାଠି ଥିବା ସ୍ଥାନର ନାମ କୋଲ୍ହଭାଷାରେ ଜାହିଁରା ଅଟେ । ଶିଙ୍ଗ ବୁଙ୍ଗା ହେଉ ଅଥ ସୂର୍ଯ୍ୟଦେବତା । ମକର ସଂକ୍ରାନ୍ତି ଦିନ ଆଗେ ଅନେକ ଦେବତାଙ୍କଠାରେ ନରବଳି ହେଉଥିଲା । ଏବେ ମଧ୍ୟ ସେ ଦିନ ସିଂହଭୂମରେ ଅନେକ ବୋଦା ଓ ଛେଳି ହଣା ହୁଅନ୍ତି । ଅର୍ଜୁନ ସିଂହ ସିପାହିବିଦ୍ରୋହରେ ଯୋଗ ଦେଇ ଇଂରେଜଙ୍କ ବିରୁଦ୍ଧରେ ଲଢ଼ିଥିଲେ । ସେଥିପାଇଁ ସେ କାଶୀରେ ବନ୍ଦୀ ହୋଇ ରହିଲେ । ସିଂହଭୂମ ଖାସ ହେଲା । ସରାଇକଲା ଓ ଖରସୁଆଁର ରାଜାମାନେ ଇଂରେଜଙ୍କୁ ସାହାଯ୍ୟ ଦେଇଥିବାରୁ ରାଜଗାଦିରେ ରହିଲେ ।

୧

ସିଂହଭୂଇଁ ରଜା ଅର୍ଜୁନ ସିଂହ ଯେ
ରାଜୁତି କରନ୍ତି ଥିଲେ;
ବନସ୍ତର ସିଂହ ସଙ୍ଗତେ ଯୁଝି କି,
ନାମ ଖ୍ୟାତି ପାଇଥିଲେ ।

ଜିଣି କୋଲ୍ହ ଦେଶ, ଆପଣା ରାଇଜେ
ମିଶାଇଥିଲେ ସେ ନିଜ;

କୋନ୍ଧେ ସେଥିପାଇଁ ସଜ ଭଣ୍ଡନ୍ତି ଲୋ,
ମେଳି କରିବା ପାଇଁକି ।

ବଡ଼ ବଳବନ୍ତ ସେ କୋନ୍ଧ ପ୍ରଜାଏ,
ଏକକୁ ଅନେକ ବଳି;
ମହାବଳ ଭୁଲେ ହୁଅନ୍ତି ପଶି ଲୋ,
ଧରାଧରି ଗଡ଼ାଗଡ଼ି ।

ବାଘ ପିଲା ଘରର ବଗଡ଼ ପରାଏ
ପୋଷନ୍ତି ବନରୁଁ ଆଣି;
ଶୂନ୍ୟକୁ ପଥର ଫୋପାଡ଼ି ବାହା ଲୋ,
ଦେଖାଇ ଦଅନ୍ତି ପୁଣି ।

ଧନୁଶର ହାତେ ଅରଣ୍ୟ ଭିତରେ
ମାଡ଼ି ଯାଉଥିଲା ବେଳ
ହାତୀ ଗଣ୍ଡା ସିଂହ—ବଣ ଜନ୍ତୁଏ ଲୋ,
ଲୁଚି ଯାଉଥାନ୍ତି ଡରେ ।

ହେଲେ, କ ହେବ; ସେ ଅର୍ଜୁନ ସିଂହ ତ
ମନ୍ତ୍ରିୟ ମହାପରାକ୍ରମୀ;

କଳି ନିଜ ବଳ, ମେଳି ନ କରେ ଲୋ,
କୋନ୍ଧେ ହୋଇଥାନ୍ତି ଭୁନ ।

ଚାରିଟଙ୍କେ ଥରେ ଖଜଣା ମୁଠାକ
ଗଡ଼େ ସେ ଯାଆନ୍ତି ଦେଇ,

ନେଇ ନଳ୍ହ ହାତେ ଯୋଡ଼ି, କହନ୍ତି ଲୋ—
“କେ ଦୁଃ ନ ଦେଲୁ ରହି” ।

୬

ସିଂହଭୂଇଁ ଦେଶ ଓଡ଼ିଶା ଭିଇତି
ବେଲନ୍ତୁ ପୁରାଣ ଅଛି;
ସୁରାଖ ସଇତେ ବାହୁପ୍ରତାପେ ଲେ,
ମର୍ତ୍ତ୍ୟେ ଟେକଛନ୍ତି ଛତି ।

ବଇଶ ରାଇଜେ ନଈବଡ଼ି ପାଣି
ପରାଏ ଯାଅନ୍ତି ମାଡ଼ି;
କାଣ୍ଡ ପଟେ ଯେବେ ଧରନ୍ତି ହାତେ ଲେ,
ବସୁଧା ଦିଅନ୍ତି ଝାଳି ।

ହାରିବା ବୋଲି ଯା ବୋଲନ୍ତି ସଂସାରେ,
ସୁରାଖେ ଜାଣନ୍ତି ନାହିଁ;
କାଟି ମୁଣ୍ଡ ପଟେ ଫିଙ୍ଗନ୍ତି ଦେଖୁଁ ଲୋ,
ନିନ୍ଦା ନ ପାରନ୍ତି ସହି ।

ବଳ ଯାର ଯେତେ ଏ ମହୀମଣ୍ଡଳେ,
ବଳୁଆର ବଶ ପୁଣି—
ଅର୍ଜୁନ ସିଂହଙ୍କୁ ପିଅର ପ୍ରାଣେ ଲେ,
ସୁରାଖେ ଥାଅନ୍ତି ମାନି ।

ଯେତେବେଳେ ଯାହା ଆଜ୍ଞା ସେ ରାଜନ
କରନ୍ତି ସଇତେ ରାଇ,
ତକ୍ଷଣେ ସୁରାଖେ ତୁଳନ୍ତି ଯାଇ ଲୋ,
ତ୍ରୁମେ କେ ଟଳାଏ ନାହିଁ ।

ରାଜ୍ୟୁଁ ଗଡ଼ ଜିଣି, ସିଂହଭୂଇଁ ଦେଶେ
ମିଶାଇ ଦେଅନ୍ତି କେତେ;

ତାଙ୍କ ବଳେ ଏକା ଅର୍ଜୁନ ସିଂହ ଲୋ,
ବଳିଆର ଏ ଜଗତେ ।

୩

ସୁରକ୍ଷ ସଇନେ ବଡ଼ ସଜ୍ଜନ ସେ
ବଶୋଇ ଭୁଜେନ୍ଦ୍ର ଯାନ,
ଶତ୍ରେ କୋଣ ଦେଶେ ନାଆଁ ତା ଖ୍ୟାତ ଲୋ—
ସୁରକ୍ଷ ମଉଡ଼ମଣି ।
ବାଘ ତା ଭେଣ୍ଡିଆ ମହାବଳ ଭୁଟଲ
ଲଢ଼ି ଜଣିଥିଲା ନକ;
ଶାଢ଼ୀ ପାଇଥିଲା ସଜ ହାମୁଛୁ ଲୋ—
‘ମୃଗେନ୍ଦ୍ର ଭୀମ ମାଣିକ ।’
ଭୁଜେନ୍ଦ୍ର ନଜେ ତ ଭେଣ୍ଡା ବୟସେ ତା
ବଳ ପରଖିବା ପାଇଁ
ଶାଳ ଗଛମାନ ଉପାଡୁଥିଲା ଲୋ,
ବନସ୍ତ ମଧ୍ୟକୁ ଯାଇ ।
‘ସିଂହାସିନୀ’ ବୋଲି ଝିଅଟି କୋଳକୁ
ଏକଇ ଦାନ୍ତୁତ ତାର;
ସିଂହ କୋଠ ମୁହେଁ ଜନମ ତାର ଲୋ,
ଚମ୍ପସ ଢୋଲ ସତର ।
ସୁରକ୍ଷ ଦରଣୀ ପେଠୁଁ ଜନ୍ମ ବୋଲି
ରୂପଟି କଳା ତା ସିନା;
ବଦନ ଠାଣିକ, ଅଙ୍ଗ ଶୋହାକୁ ଲୋ,
ନାହିଁ ନ ଥିବ ଉପମା ।

ବାହୁ ଜଙ୍ଘମାଳ ବଳଦେଲା ପରି
　　ବର୍ତ୍ତୁଳ ଆକାର ଅତି;
ମୁଣ୍ଡବାଳ ପେଣ୍ଡା ଫିଟାଇ ଦେଲେ ଲୋ,
　　ଯାଏ ଭୂଇଁତଳେ ଲୋଟି ।
ହସନ୍ତେ ବାଳୀ ସେ ବନ ଫୁଲ ପ୍ରାଏ
　　ମୁହଁ ତା ଦିଶଇ ତୋଷ;
ବନପକ୍ଷେ ଉଡ଼ିଲା ସାଗ୍ରିଟି ପରି ଲୋ,
　　ସ୍ୱର ଶୁଭୁଥାଇ ଯଶ ।
ଦେଖି ତାଡଧେ କହେ ଭୂଜେନ୍ଦ୍ର ଉପଝେ—
　　"ଏ ମୋର ମାଣିକ୍ୟ ଗୋଟି;
ସିଂହାସିନୀ ସରି ସମାନ ମହୀରେ
　　କାହିଁ ନାହିଁ ନ ଥିବଟି ।"

୯

ପାରିଧିରେ ଦିନେ ସୁବର୍ଣ୍ଣ ଗିରିରେ
　　ଖେଳେ ସେ ହୋଇ ସଜନ,
ସିଂହାସିନୀ ରୂପ ଦେଖିଲେ ନେନେ ଲୋ
　　ଛନ୍ନ ହୋଇଗଲା ମନ ।
କହିଲେ, "ବିଧାତା କେଡ଼େ ଅବିବେଚ;
　　ଏ ଘୋର ସୁରଖ ଧୂଳେ
ସ୍ୱର୍ଗ ଅପସରୀ ଜନମ ଦେଇଛି;
　　କି ଦୁଖ ଲିହି ତା ଭାଲେ !
ରାଜ ଉଆସକୁ ଯୋଗ୍ୟ ଏକା ବାଳୀ;
　　ହେବାର ହେଉ ଯା ଅଛେ,

ସିଂହଦ୍ବାରୁଁ ଗଡ଼େ ହେବ ଏହୁ ସ୍ଥଣୀ,
ଏ ଜୀବ ଥାଉ ମୋ ମନେ ।’’
କହୁ ଏତେ, ନୃପ ସିଂହାସିନୀ ହାତ
ଧଇଲେ ଆପଣା ହାତେ;
ଆଣି କୋଡ଼େ ତାକୁ ବସାଇ, ବେଗେ ଲୋ,
ପିଟିଲେ ଘୋଡ଼ାକୁ ଯଷ୍ଠେ ।

୫

“ରଜା ହୋଇ ନୃପ,’’ କାନ୍ଦଇ କୁଅଁରୀ,
“ପ୍ରଜାଙ୍କ ବାପଟି ପରି;
କେମନ୍ତେ ନନ୍ଦଙ୍କ ଜାଣି ଝିଅକୁ ହେ
ଏ ଦୁଖ ଦେଉଛ ଲୋ ?’’
ଯଷ୍ଠ ମାଡ଼େ ଘୋଡ଼ା ଉଡ଼ିଯାଏ ବନେ,
ପାଦ ତା ନ ଲାଗେ ତଳେ;
ସାଇଁ ସାଇଁ ବାଆ ବେଗେ ଖାଲୁଶେ ଲୋ,
ବୋହିଯାଏ ଗଛ ଡାଳେ;
ସନ ସନ ପବନ ଘୋଷୁଛି ବନସ୍ଥେ,
ଝର ଝର ଲହେ ପାଣି—
‘‘କାହିଁ, ହେ ରାଜନ, ଏ ସୁରଖା ବାଳୀ
ବଳାତ୍କାରେ ଯାଅ ନେଇ ?’’
ବଳାତ୍କାରେ ନୃପ ନେଇଯାନ୍ତି, ଝିଅ
କାନ୍ଦେ ବସି ନିରନ୍ତର—
‘‘ଧର୍ମ ହେବେ ଥିବ ସହାତେ, ଫଳିବ
କର୍ମ ଅନୁରୂପେ ଫଳ ।

ସିଂହଭୂଇଁ ଗଡ଼େ ରଜା ହେବା ପାଇଁ
ନ ଥିବ ଭୂଲୋକେ କେହି;
ପୁନ୍ନମୁଖ, ନୃପ, ନାସ୍ତି—ନିଶ୍ଚୟେ ହେ
ଏ ମର୍ତ୍ତ୍ୟେ ଦେଖିବ ନାହିଁ ।”

୬

“ଗାଦିରେ ବସି ସେ ରଜା ବୋଲାଉଛନ୍ତି,
ହୋଇଛନ୍ତି ଜଗଜ୍ଜିତା;
ଧର୍ମ ଏବେ ତାକୁ ଛାଡ଼ିଲାଣି, ଗୃଲ
ଯେନମା ତା ରକ୍ତଶିରା ।”

ସକଳ ସୁରଖେ ମିଳି ଏକ ଠାବେ
ଦର୍ପେ କରୁଛନ୍ତି ପଣ;
ଛୁଣ୍ଡରଡ଼, ପାଦଶବଦେ ତାଙ୍କ ଲୋ,
କମ୍ପି ଉଠୁଅଛି ବନ ।

ଗର୍ଜି ବୁଲେ ସେଠେ ବାଘୁ ହାତୀ ପ୍ରାୟେ
ବିଶୋଇ ଭୁଜେନ୍ଦ୍ର ଦାନ;
ଗୋଠା ଗୋଠା ଶାଳ ମୋଡ଼ିପକାଏ ଲୋ,
ଗୁଲନ୍ତେ ପାଭିଁକି ଅଣି ।

କହେ, “ଏଡ଼େ ସ୍ଥାନ ଦେଖିଲ କି ମୋରେ;
ମୋ କୋଳ ବାଳୁତ ଝିଅ
ବଳେ ଭିଡ଼ିନେଲା ଦୁଆର ଆଗୁଁ ମୋ,
ମୁଁ ଧରି ରହିଛନ୍ତି ଦେହ ।

ଆସ ଏବେ ଯିବା, ସୁବ୍ରାଖ ସଇନେ,
ଭାଙ୍ଗିବା ଗରବ ତାର;
ଗଡ଼ ପାଶସ୍ତୁ ଚୂରିବା କାଢ଼ି ଦେ
ଗୋଟିକି ଗୋଟି ପଥର ।

ଗୋଟି ଗୋଟି ଶର ବନ୍ଧ କୋଟି ସେନା,"
ଭେଦିବା ଭିଆସ କାନ୍ତୁ;
ଧର ହାତେ ଚୁଟି, ବେକୁଁ ମୁଣ୍ଡ ତାର
କାଟିବା ସୁରାଖ ଆଠ ।"

୭

"ଗାଦରେ ବସି ସେ ରଙ୍ଗା ବୋଲାଉଛି,
ହୋଇଛି ଜଗବନ୍ଦିତା;
ଧର୍ମ ତାକୁ ନଷ୍ଟ ହଠାଇଲାଣି, ଗ୍ରୁଲ
ଯେନପା ତା ରକ୍ତଶତା ।"

ଧରି ଧନୁଶର ଉଠିଲେ ସୁସଖେ,
କରି ମହାକୋପେ ପଣ;
ଭୁଣ୍ଡରଡ଼, "ପାଦଶବଦେ ତାଙ୍କ ଟଳୋ,
ଥର୍‌ହଗଲା ସାଗ୍ର ବନ ।

ଉଠିଲା ତଷଣେ ବୁଢ଼ା ସୁସଖ ସେ
ବୟସ ଅଶୀ ଉପର;
ଧଳା ଦାଢ଼ି ବାଳ କଳା ମୁହଁକୁ ଟେଳୁ,
ବଢ଼ାଏ ବୁଦ୍ଧି ଦର୍ଗୁର ।

ବୁଢ୍ଢାଇ କହିଲା, "ବାପ ଯେବେ ଘରେ
ଜନନ ଅଚେତକପଣ.

ପୁଅଯାକ କି ହେବ ମିଶି କଦାଣତେ
 ନେଇ ଆସେ ତା ଜୀବନ ?

ରଜା ଅନ୍ନ ଜଳ ଖାଇ ଏତେ କାଳ,
 ବଞ୍ଚିଛେଁ ମହୀରେ ପରା;
ବାପ ସେହୁ, ଆମେ ପୁଅଛି ସୁରଖେ,
 ବୁଝି କି ନ ପାର ଭଲ ?

ଯେଉଁ ହାତେ ଯୁଝି ଏ ମହୀମଣ୍ଡଳେ
 ବଡ଼ ହୋଇଅଛେଁ ତାରେ,
ସେହି ହାତେ ପୁଣି କହ ପ୍ରାଣ ତାର
 ହରିବା କେଉଁ ବିଚାରେ ?

ହେଲେ, ଧର୍ମ ଆଉ ନାହିଁଛି କହୁଁଛେ
 ଏ ସିଂହଭୂଇଁ ରାଇଜେ;
ଉଠ ପଳାଇବା ଆନ ଦେଶେ, ରଜା
 ସଢ଼ ମରୁ ପାପ ଲାଜେ ।”

“ସତ ଏକା, ଧର୍ମ ନାହିଁ ଏ ରାଇଜେ,”
 ଛାଡ଼ିଲେ ସୁରଖେ ରଡ଼,
ଉଠ ପଳାଇବା, ମରୁ ରଜା ତାର
 ନିଜ ପାପ ଲାଜେ ସଢ଼ି ।

୮

ପଳାନ୍ତେ ସୁରଖେ ବଣ ଗାଆଁ ଛାଡ଼ି,
 ଧଇଲେ ଲଙ୍ଗଳ କାନ୍ଧି;
ସିଆରେ ସିଆରେ ଚଷି, ବନସ୍ଥୁଁ ତେଲ,
 ତାଡ଼ିଲେ କୋଶକ ମାଟି ।

ଲମ୍ବ ଓସାର ସେ ଯାଆଙ୍କ ଅଜ୍ଞାନ୍ତେ
ଦିନେକେ ଖୋଲିଲେ ପଦ୍ମ;
ବେଳ ବୁଡିଗଲା ବଡ଼ ସକାଳୁ ଲୋ,
ହୋଇଲା ଚନ୍ଦ୍ର ଉଦୟ ।

କହିଲେ, "ଏଣୁ ତ ଲୋପ୍ୟ ହେଲା ଦେଶେ,
ଶିକ୍ଷା ହେଲେ ଥାଉ ପଢ଼ା ।"
ନାହିଁ ବନ୍ଧ ଅଜ୍ଞ ସିଂହଭୂଇଁରେ ଲୋ,
'ଲଙ୍ଗଳା କଣ୍ଠା'କୁ ବଳା ।

ବଇଶାଖି ଖରା କୋପେ ଜଳା ଆସି,
ଖିଅଇ ପାଣି ବାଟୋଇ;
କହି, "ଧନ୍ୟ ଏକା ସୁରଖି ସଇନେ,"
ନିଶ୍ୱାସ ପକାଏ ଗୁହିଁ ।

୯

ସଡ଼କ ଭିତରେ ସିଂହଭୂଇଁ ଖଣ୍ଡ,
ଚଳାଇଗଲେ ସୁରଖେ;
ଭଲି ସେ ସଜନ ହୁଅନ୍ତି ବସି ଲୋ,
ବୁଝି ନ ଦିଶଇ ଠିକେ ।

ନାଗ ସାପ ଗାତେ ପଶିଥିଲା, ଅବା
ଶୋଇଥିଲା ମହାବଳ;
ସୁରଖି ସଇନ ତରେ ଯେମନ୍ତେ ଲୋ,
ଥିଲେ ସିନା ଯେତେ କୋହଲ ।

ସୁରଖି ସଇନେ ଦେଶ ଦେଶାନ୍ତରେ
ଗଲେଣି ଏବେ ତ ଗୁଳି;

ବଣ ଖୋଲେ ଲୁଚ, କୋହ୍ଲ ଏ ମତ୍ତ୍ୟେ ଲୋ,
ଆଜ କ ରହନ୍ତି ଡରି ?

ଘଡ଼ ହୁହୁଂକାର କୋହ୍ଲ ଦେଶଯାକେ;
ବାଲ ବୃଦ୍ଧ ସ୍ତ୍ରିସ ଯୁବା।
ଗାଆଁରୁ ଗାଆଁକୁ, ବନୁ ବନସ୍ଥେ ଲୋ,
ଦେଖାଉଅଛନ୍ତି ପ୍ରଭା ।

"ଧରିବୁଁ ରଜାଙ୍କୁ, ମାରିବୁଁ, ହାଣିମ୍ବୁଁ,
ରଖୁ କେ ରଖୁଛୁ ଅଜ,"
ଖୋଲୁଁ ଖୋଲେ ଯାଏ, ପିଢ଼ୁଁ ପିଢ଼କୁ ଲୋ,
କୋହ୍ଲ ମେଳା ଘଣ୍ଟ ବାଜା ।

ଧନୁଶର ହାତେ ଅଗଭର ହୋଇ,
ଗୁଲନ୍ତି ଯୁବଙ୍କୁ ଥୋକେ;
ଶୂନ୍ୟକୁ ଓଠାଇ ଛାଡ଼ନ୍ତି କାଣ୍ଡ ଲୋ,
ପିଇଁ ପିଇଁ ବାଠଯାକେ ।
ଆଜ ଥୋକେ ପୁଣି ଗର୍ଜନେ ଝାଳନ୍ତି
ବନସ୍ଥ ପାହାଡ଼ ସତେ;
ବାଘ ଭାଲୁ ବାର୍ହା ପ୍ରାଣବିକଳେ ଲୋ,
ପଶନ୍ତି କୋରଡ଼ ଗାତେ ।

୧୦

ଗାଆଁ ବଲ ବଣେ ସ୍ୱର ହୋଇଗଲା,
"କୋହେଲ କରିଛନ୍ତି ମେଳି",
ମୁଦ ଗଡ଼ଦ୍ୱାର, ଅର୍ଜୁନ ସିଂହ ଲୋ,
ବସି ହେଉଛନ୍ତି ଭାଳ ।

ଲୁଗା ପିନ୍ଧା ଦେଖେ, ଧୋବଧାଉଳିଆ
ଦେଖନ୍ତି କୋହେଳ ସେ କାହିଁ,
"ଏଇ ରଜା ଚର, ଧର ମାର ହାଣ"
ଗର୍ଜି, ଆସନ୍ତି ଗୋଡ଼ାଇ ।

କୋଡ଼ି କୋଡ଼ି ଗଣି, ଶହକୁ ଶହ ସେ
ବାନ୍ଧି କି ଆଣନ୍ତି ଧରି;
ଶିଙ୍ଗିବୁଙ୍ଗା ଆଗେ ଦଅନ୍ତି ଛେଦ ଲେ,
"ଯାଆ ମା ଖାଇଯା" ବୋଲି ।

ଶିଙ୍ଗିବୁଙ୍ଗା ବଡ଼ ପ୍ରତ୍ୟକ୍ଷ ଦେବତା
ତନକୋଡ଼ କୋହ୍ଲ ପିଢ଼େ,
ରୋଗ ବଇରଗେ ସାହା କି ଏକା ଲେ,
ଆପଦୁଁ ତାରନ୍ତି ଭଲେ ।

ତାଙ୍କ ବେଢ଼ା ଅଳ, ପାଖରି ଦେଉଳ,
ଆଖପାଖ ପଦା ବନ
ମଣିଷ କେତେ ବୁଢ଼ ରହିଛନ୍ତି ଲେ,
ଯମପୁରି ସଦୃସମ ।

୧୧

ସହସ୍ର ସହସ୍ର ପ୍ରଜା ହାଣ ଖାଇ,
ଦେଶ ହୋଇଯାଏ ଖାଲି;
ଅର୍ଜୁନ ସିଂହ ତ ବଡ଼ଜ ହୁଅନ୍ତେ ଲେ,
ଭଙ୍ଗିବାକୁ କୋହ୍ଲ ମେଳି ।

କେଡ଼େ ବଡ଼ ବୀରେ ଅର୍ଜୁନ ସିଂହ ସେ,
ଯୁଦ୍ଧଂ ନ ପଶନ୍ତେ ଆଜ ?

ହେଲେ, ଘୃତ ଢଳେ ପତାଜ ନାହିଁ ଲୋ,
        ଦଳ ନେ ଯାଉଛନ୍ତି ଭାଜି ।

ଆଜାନୁବଇସ୍ଥ ବଣେଇ ସୁଭଜ
        ନୃପ ବଳିଆର ଅତି;
କି କରିବେ, ତାଙ୍କୁ ଲେଖି ରାଜନ ଲୋ,
        ପେଷିଲେ ଚିଠାଟି ଗୋଟି ।

"କୋହ୍ଲ ମେଳି ଯୋଗେ ସିଂହଭୂଇଁ ଦେଶ
        ହେଲା ବଡ଼ ନାରଖାର;
କି କରିବି ଏବେ, ନାହିଁ ମୋ ସାମର୍ଥ୍ୟ
        ନାହିଁକି ସଇନ ବଳ ।

ଏ ହେତୁ ଦଇନ ହୋଇ, ଶ୍ରୀ ସମ୍ମୁରେ
        ମାଗୁଣି କରୁଛନ୍ତି ମୁହିଁ;
ଯେତେ ଅପରାଧ ପାସୋରି, ରାଜନ,
        ଉପାୟ ଦିଅ ବତାଇ ।"

ଲେଖା ପଢ଼ି ରଜା ତଳ ଉପରକୁ
        ଚାହିଁ ଦଣ୍ଡେ, ହେଲେ ତୁନ;
ଶ୍ରୀପତି ଓଢ଼ାକୁ ରାଇ ସମ୍ମୁକୁ ଲୋ,
        ଆଜ୍ଞା ଶେଷ କଲେ ପୁଣି—

"ଯାଅ, ଓଢ଼ା, ବେଗେ, ସିଂହଭୂଇଁ ରଜା
        ଅଛନ୍ତି ଏବେ ଡକାଇ;
କୋହ୍ଲେ ଏ ଦେଶେ ମେଳି କରିଛନ୍ତି,
        ନ ଭାଙ୍ଗି ଫେରିବ ନାହିଁ ।"

୧୨

ବଡ଼ ଯାରଙ୍ଗମ ମଟେଶ୍ୟ ଓଡାପୁଅ
ବୁଦ୍ଧି ବଳ କଢ଼ିଶଟେଲ;
'ଭେଦଅ ଶ୍ରୀଯତ' ବୋଲି ନାଅଁ ଥା ଲୋ,
ପ୍ରଖ୍ୟାତ ବଣେଇ ଗଡ଼େ ।

ଗାଈ ପାଖୁ ବଛୁ ଛଡ଼ାଇ ଯାଉଇ,
ପିଅରକୋଲରୁ ପୁତ;
ମୂଷା ବସାଢ଼ଙ୍କି, ବାଘ ମିଟ୍ଟେଗେ ଲୋ,
ବହାଇଯାରେ ହଙ୍ଗାତ ।

ସିଂହଭୂଇଁ ଗଡ଼େ ଦହୁଁ, ଶ୍ରୀପତ
ମିଳିଲା ରଜାଙ୍କ ପାଶେ;
କହିଲା, ''ସ୍ୱଜନ, ଏଡ଼େ ଭ୍ରଟଲେଣି ଦେ
ଏଥକୁ କରି କ ଆସେ ?''

ନିଜ ପିନ୍ଧା ଲୁଗା ପାଲଟି, ଅଣ୍ଟାଟର
ବାନ୍ଧିଲା ଗଛର ଡାଳ;
ଅଷ୍ଟାଙ୍ଗ ଶରୀର କଜଳ ଲେପି ଲୋ,
ପଶିଲା ବଣଭିତର ।

ଶୁଲଟେନ୍ତି ଯେ କୋହ୍ନେଲ ଧୁଛନ୍ତି "ଏ କଏ ?"
ହାତ ଏକୁ ଅନେ ଠାରେ,
ସାକ୍ଷାତ କୋହ୍ନ ଉ ଶ୍ରୀପତ ଓଁଡା ଲୋ,
ତଲେ ହେଲେ ନୁହେଁ ବାରି ।

ଭାଇ ବୋଲି ଡାକେ କାହାକୁ, ଭଣଜା,
ମଉଷା ବୋଲଇ କାରେ;

ପିଢ଼ୁଁ ପିଢ଼େ ବୁଲେ, ଖୋଲୁଁ ଖୋଲକୁ ଲୋ,
କୋଇଲି ସଇନଙ୍କ ଛୁଟିଲେ ।

କୋଇଲି ତ ବାଳୁତ ପିଲାଙ୍କ ସମାନ
ସରଳ ବିଶ୍ୱାସୀ ଅତି;
କୂଟ କପଟେ ଯେ ଗୁଳିବ, କେମନ୍ତେ
ବୁଝିବେ ସେ ଜନ ଗତି ?

୧୩

ସବୁ ସଜ ଜନ୍ତ୍ରି ମାନଙ୍କେ ଶ୍ରାନ୍ତ
ସବୁ ଭେଦ ଠିକଣାଇ,
ନିଶାକାଳେ ଦିନେ କୋଇଲି ପିଢ଼କୁ ଲୋ,
ସଇନ ନେଲା ଚଳାଇ ।

ହାତୀ ଘୋଡ଼ା ଠାପୁ, ନଳି ବଜ୍ର ନାଦେ
ଯାଏ ବଣ ପଦା ଥରି;
ନଦୁଁ ଉଠି କୋଇଲି ବାଉଳି ହେଲେ ଲୋ—
ପଶିଙ୍କୁ ପିଢ଼େ ବଇସି ।

ଯୁଦ୍ଧ କରିବାକୁ ନ ଥିଲେ ତ ସାଜ,
ନାହିଁ ଧନୁଶର ହାତେ;
ଅଣ୍ଡାଳି ବୁଲନ୍ତେ, ଅନ୍ଧାର ରାତି ଲୋ,
ବଣା କରିଦେଏ ବାଟେ ।

ଫୁଟାନ୍ତି ନଳି ଯେ ରଜାଙ୍କ ଧାଇଁକେ,
ଗୁଳନ୍ତି ବୁଲାଇ ଖଣ୍ଡା;
କୋଇଲି ଆଣ୍ଠୁଁ ତଳେ ଚଢ଼ନ୍ତି ଅଧା ଲୋ,
ବଣେ ଅସୁମାରି ଭେଣ୍ଡା !

୧୪

ସତ ପୁଣି ଯେବେ ଯାଆନ୍ତି ବନସ୍ତେ,
ଉଜଳ ଦଶିଲା ମସ୍ତା,
କୋହଲ ମଡ଼ା ଭାସି ରକତ କୁଣ୍ଡେ ଲୋ,
ଗଦା ଗଦା ଛନ୍ତି ଶୋଇ ।

ସଇ ଚଉପାଶେ ଅପଣା ସଇନେ,
କହନ୍ତି ଶ୍ରୀପତି ଓଝା—
"କୋହେଲି ହାର ଏବେ ଭୁନ ହେଲେଣି ହେ,
ଆଉ କର ନାହିଁ ଶଙ୍କା ।"

କୋହେଲି ହାର ସତେ ଭୁନ ହୋଇଛନ୍ତି,
କି ଅଛି ଉପାୟ ଆଉ ?
ସଞ୍ଚାଣର ଡେଣା ଛିଡ଼ିଲା ପ୍ରାଏ ଲୋ,
ଏ ମର୍ତ୍ତ୍ୟେ ଭାଙ୍ଗିଛି ଦାଉ ।

୧୫

କୋହଲ ଠାକୁରାଣୀ ଶିଙ୍ଗିବୁଙ୍ଗା ମାଆ
ଜାହିଁର ଖାଲିଛି ଏବେ;
ପିଢ଼ୁଁ ପିଢ଼େ କାହିଁ ପୂଜା ମାଗଣା ଲୋ,
ନୋହୁଛି କେବଣ ଠାବେ ।

ନଡ ଖଣ୍ଡା ଗଞ୍ଜା ଦଶ ମୁଣ୍ଡ ଅଜା
ହଣା ତ ନୋହୁଛି ତହିଁ;
ମକର ସଂକ୍ରାନ୍ତି ମଣିଷ ବଳି ଲୋ,
ଗଲାଣି ସପନ ହୋଇ ।

ପ୍ରତି କୋହଳ ତୁଣ୍ଡେ ଶୁଣା ତ ଯାଉଛି—
"ଏ ମର୍ତ୍ତ୍ୟେ ନାହାନ୍ତି ଦଅଁ;
ପଥର ଠେଲାକ ବନେ ଶିଙ୍ଗିବୁଙ୍ଗା
କି ହୋଇପାରନ୍ତି କହ ?"

ପଥର ଠେଲାକ ବନେ ଶିଙ୍ଗିବୁଙ୍ଗା
ସତେ କି କଥାବା ଆଉ ?
ରଖି ନ ପାରଲେ ନିଜ ପୁଅଙ୍କୁ ଟେ,
ଆନ କଥାମାନ ଥାଉ ।

୧୭

କୋହଳ ସଇନଙ୍କି କିଣି, ନିରଙ୍କୁଶେ
ଅବର କଲେ ରଜ୍ଜୁତି;
ସିଂହଭୂଇଁ ରଜା ଅର୍ଜୁନ ସିଂହ ଟେ,
ମଣ୍ଡିରେ ଠେକିଲେ ଛତି ।

ହେଲେ, ନାହିଁ ଛତ ହୁଏ ଆଉ ଠିଆ
ପୂରୁବ ପରି କି ଏବେ;
ଭାଗ୍ୟ ପ୍ରତିକୂଳ ହେଲେ, କାହାର ଟେ,
ବଉବ ରହଇ ଭବେ ?

ମୁହେଁ ତାଙ୍କ ଜ୍ୟୋତି ନାହିଁ ଲବେ ଆଉ,
ଜୀବନେ ନାହିଁଟି ସୁଖ;
ବନସ୍ତେ ଫୁଟିଲା ସଜ ଫୁଲକୁ ଟେ,
କାହିଁ କି ଦେଉଛି ଚୋକ ?

ଦେଶ ଦେଶାନ୍ତରୁ ଫିରଙ୍ଗୀ ସଇନେ
ହୋଇ ପାନ୍ତି ପିନ୍ଧୁ ପାଚି,

ସିଂହଭୂଇଁ ଗଡ଼େ କରନ୍ତି ନାଟ ଲୋ,
ଘରଜା ଘାଇଜ ମାର ।

ସୁସଖେ କ ଆଜି ଅଛନ୍ତି ସାଇଜେ,
ଭାଙ୍ଗିବେ ବଇରୀବଳ ?
କୋହଲ ପିଢ଼େ ଆଗ ଠାଣକ ଅଛୁ ଲୋ,
ଯୁଝକୁ ହେବେ ତିଆର ?

ବାନ୍ଧି ରାଜନଙ୍କୁ ଫିରିଙ୍ଗି ଦୁରସ୍ତେ
କାଶୀରେ ରଖିଲା ନେଇ;
ସିଂହଭୂଇଁ ପ୍ରଜା ଲକ୍ଷ ଗଡ଼ାନ୍ତି ଲୋ,
ଶୂନ୍ୟ ଉଆସକୁ ଗୁହିଁ ।

ସିଂହଭୂଇଁ ଦେଶ ଓଡ଼ିଶା ସାଇଜେ
ବେଲଢୁଁ ପୁରାଣ୍ୟ ଅତି;
ମନେ ମସ୍ଥାତଲେ କେ ଦାଣ୍ଡିଥିଲା ଲୋ,
ଧନେ ତା ଦେବର ଏ ଗତି ?'

---

# କାଳିଜାଈ

ହୁଲେର ଓ ଗଣ୍ଡଶିଳା ବାଣପୁରର ଦୁଇଗୋଟି ପାହାଡ଼ । ଛଟଅନାସି ଓ ମାମୁଁଭଣଜା ପାହାଡ଼ ବର୍ତ୍ତେ ସେହି ବାଣପୁରରେ, ଚିଲିକା କୂଳରେ । ଚଢ଼େଇହଗା ଚିଲିକାଭିତରେ ଗୋଟିଏ ପଥର ଗଦା । ସେଠାରେ ନାନାପ୍ରକାର ଚଢ଼େଇ ବସନ୍ତି ଓ ନିଜ ବିଷ୍ଠାରେ ତାକୁ ଧଳା କରିଦିଅନ୍ତି । କାଳିଜାଈ ପାହାଡ଼ ଚିଲିକା ଭିତରେ । ପାରିକୁଦ ଚିଲିକା-ଭିତରେ ଗୋଟିଏ ଦ୍ୱୀପ କହିଲେ ଚଳେ । ବାଲୁଗାଁ ଚିଲିକା କୂଳରେ ପାରିକୁଦରୁ ପାଞ୍ଚ ଛ କୋଶ ହେବ । ସାଳିଅ, ସ୍ରୋତ ହେଲେ ସୁଦ୍ଧା ବାଣପୁରର ପ୍ରଧାନ ନଦୀ । ଭଗବତୀଙ୍କ ଦେଉଳ ତା କୂଳରେ ।

୧

"ଭଲ କରି ନାଆ ବୁହା, ରେ ନାଉରି !
ଝିଅକୁ ମାଡ଼ୁଛି ଡର;
ଗଡ଼େ ଗଡ଼ଲୋକେ ଗୁହିଁ ବସିଥିବେ,
ଝିଅ ଯିବ ଶାଶୁଘର ।"

ଭଲ କରି ନାଆ ବୋହୁଛି ନାଉରି,
ଗଜଲଇ କରୁଛି ଝିଅ;
ମାମୁଁଭଣଜାର କୂଳରୁ ଆସେ ଲୋ,
ବୋହି ସୁଲୁସୁଲୁ ବାଆ ।

ଦିନ ଦଶ ଘଡ଼ି ହେଲାଣି କି ଆସି,
ଝରି ମାରେ ଗୁହିଁ ଗୁହିଁ;
ପାଞ୍ଚ କୋଶ ବାଟ ଯିବାକୁ ଅଛି ଲୋ,
ବେଳ ତ ଥାଇବ ନାହିଁ ।

୨

ନାଉରି ବାପୁଡ଼ା କାତ୍ର ମାରୁଅଛି,
ଉଦାସେ ଗାଉଛି ଗୀତ;
ନାଆ ଉଡ଼ିଯାଏ ପବନ ପ୍ରାଏ ଲୋ,
ଜଣା ନ ପଡ଼ଇ ବାଟ ।

ମାଆ ଭଉଣୀଙ୍କି, ସାଥୀ ସଙ୍ଗାତଙ୍କୁ
ଝିଅ ଯେ ଆସିଛି ଛାଡ଼ି;
ନାଆରେ ବସି, ସେ ତାଙ୍କରି କଥା ଲୋ,
ହୁଏ ନିରନ୍ତରେ ଭୋଳି ।

ମାଆ ଭଉଣୀଏ, ସାଥୀ ସଙ୍ଗାତେ ସେ
ରହିଲେ ଦୂରନ୍ତେ କାହିଁ;
ଫେରିବେ ନୋହୁଛି, ଆଉ କି ଦିନେ ଲୋ,
ଫେରି ସେ ଦେଖିବ ଯାଇ !

ନାଆ ଗୁଳୁଅଛି ପବନ ସମାନେ,
ମୁହୂର୍ତ୍ତେ ନ ହୁଏ ଥିର;
ଶଙ୍କା ଫେଡେ ତାର ବଣ ପାହାଡ଼ ଲୋ,
ଅନାଇ ଦେଖନ୍ତା ଝିଅ ।

ଧଣ୍ଟଶିଳା ଶିଖେ ଗୁହିଁ; ସେ କହନ୍ତା—
"ଦିଅରେ ନେମଲଣି ମୋତେ;
ଭେଟ ଆଉ ଦିନେ ନୋହିବ ଜୀବନେ,
ଯାଉଛି ଘୋର ବନନ୍ତେ ।

ସାଳିଆ ନଈ ତା ନିତ ଧନି ସାଥୀ,
ମନେ ଖେଳ ଗୋଳଇ ଜଟିଳ;

ବେଳେ ସୁଏ ତାର ସ୍ନାହାନ ସାଥେ ଲୋ,
ହସି ଲେଉଟଇ ଘରେ ।

କାଳି ଅନ୍ଧାରୁଁ ସେ ଗୃଳ ଯେ ଅଇଲା,
ଦେଖି ତ ନାହିଁନ୍ତି ତାକୁ;
ଗ୍ରର ଖ୍ୟାତ ନଈ, ନାଆଁ ହି ତାର ଲୋ,
ତିନ କୋଡ଼ି କୋଶେ ତାକୁ ।

ମାଆ ଭଗବତୀ ପୀଠ କୂଳେ ତାର,
'ଜଗନ୍ତାରିଣୀ' ନାଆଁ,
ଡାକ କହୁଥାନ୍ତି, ନୋହିଲା ଆଜ ଲୋ,
"ସାହା ମୋ ଥିବୁଟି, ମାଆ !"

୩

ନାଆ ଆସି ହେଲା ଦଣ୍ଡକେ ପ୍ରବେଶ
ଚଢ଼େଇହଗା ପାହାଡ଼େ,
ଘଣ୍ଟେଶିଳା ଆଜ ନ ଦିଶେ, ଲୁଚି ଲୋ,
ରହିଲା କାଳିଆ ଦୂରେ ।

ଗୃହୁଁ ଗୃହୁଁ ଆସି ଛୁଇଁଲା ତ ନାଆ
ଗଣ୍ଡ ତଡ଼ କଲା ପାଣି;
ଝରେ ଝିଅ ଦୁଇ ଆଖିରୁ ଲୁହ ଲୋ,
ଚନ୍ଦ୍ର ପିନ୍ଧା ଛୁଟେ କାନ ।

"ପାତକୁଦ ବୋଲି ଗରଜ ପୁଣି ସେ
ଶଳକା ମନ୍ଦିରେ କାହିଁ;
କେମନ୍ତେ ମୂର୍ଚ୍ଛିଲ ଝିଅକୁ, ବାପା ହେ,
ଏତେ ଦୂରେ ଦେବାପାଇଁ ?

ବର ବୋଲି ଯାର ଝସିଗଲି ହାତ
କି ତାର ଦେଖିଲି ଶିକ୍ଷା ?

ରୂପ ବିଦ୍ୟା ଆଉ ବିଭବ, ବାପା ହେ,
ତାହିଁଏ ତାହାଙ୍କି ବଳି ।

ମହୀମଣ୍ଡଳେ ତ ନ ଥିବ କେ କାହିଁ
ମୋଭଳି ନିରେଖ ଜନ;

ଏ ମହାସମୁଦ୍ର ମଝିରେ, ବାପା ହେ,
କେମନ୍ତେ ବଞ୍ଚିବି ଦିନ ?

ଏତେ ହାନିମାନ କରିବାକୁ ଯେବେ
ମନରେ ଥିଲା ବିଗୃର,

ଏତୁଡ଼ିଶାଳେଟି, କିପାଇଁ, ବାପା ହେ,
ତଣ୍ଟି ଚିପି ନ ମାରିଲ ?

ଝିଅକୁ ନିଶ୍ଚିନ୍ତେ ଦେଇଛ ପଠାଇ
ବନସ୍ତକୁ ଜାଣୁ ଜାଣୁ;

କପାଳ ଆଦର ଯାଉଛି, ବୋଉ ଲୋ,
ପାସୋର ନ ଦେବୁ ମନୁଁ ।"

୪

ନାଆ ଉଡ଼ିଯାଏ ପବନ ସମାନେ,
ନାହିଁ କ୍ଷଣେ ହୁଏ ସ୍ଥିର;

ଝିଅ ବସିଅଛି ତୁନି ହୋଇ ଲୋ,
ନେତ୍ରୁ ବୋହିଯାଏ ଲୁହ ।

"ନାଆ ଚାଲୁଅଛି ପବନ ସମାନେ,
ନ ମାନେ ପାଣି ପଥର;
ତୁନି ହୁଅ, ଜାଇ, ନ କାନ୍ଦ ଆଉ ଲୋ,
ଏଇ ଦିଶିଲାଣି ଗଡ଼ ।"
ଏତେ ବୋଲି ବାପା ଝିଅର ଆଖିରୁ
ଦେଲେ ଲୁହଧାର ପୋଛି,
ଯେତେ ପରି ତାଙ୍କୁ ବୁଝାନ୍ତି ବସି ଲୋ,
ଜାଇ ବୁଝୁ ନାହିଁ କିଛି ।
"ଭଲ କରି ନାଆ ବୁହା, ରେ ନାଉରି,
ଝିଅକୁ ମାଡ଼ୁଛି ଡର;
ଏତେ କାଳେ ଜାଇ ନାଅରେ ବସୁଛି,
ଯିବ ବୋଲି ଶାଶୁ ଘର ।"

୫

ଭଲ କରି ନାଆ ବୋହୁଛି ନାଉରି,
ଭିଡ଼ି ମାରୁଅଛି କାତ;
ସୁଲୁ ସୁଲୁ ବାଆ ବୋହି ଆସୁଛି ଲୋ,
ଜଣା ନ ପଡ଼ଇ ବାଟ ।
ନାଆ ଭାସି ଆସି ଦଣ୍ଡକ ଭିତରେ
ମଝି ଗଣ୍ଡେ ହେଲା ଥାଇ;
ଥିର ହୋଇ ହେଲା ନାଉରି ଠିଆ ଲୋ;
କାତ ଆଉ ପାଉ ନାହିଁ ।
ଭାଲେଶ୍ୱ-ଶିଖରୁ କଳା ମେଘ ଖଣ୍ଡେ
ଉଠେଇ ଆସିଲା କାହିଁ ;

ଲୁଚିଗଲେ ତହୁଁ ସୂର୍ଯ୍ୟ ଦେବତା ଲୋ,
ଝରି ନ ପଡ଼ଇ ଆଜ ।
ମାଡ଼ି ଆସୁଅଛି ଅତି ବେଗେ ମେଘ,
ଜଟିଆ ନାସିକ ଧର;
ବରଷା ବତାସି ଗରଜୁଅଛି ଲୋ,
ଦିନ ଦିଶେ ରାତି ପର ।

ନାଆ ପଡ଼ିଅଛି ମଝି ଗଙ୍ଗେ ଆସି,
ବୁଡ଼ିଯିବ ହୋଇ ଛତି;
ଟଳମଳ ହୋଇ ଟଳୁଛି ନାଆ ଲୋ,
ନାଉରିର ବଡ଼ ଭୀତି ।

"ଭଲ କରି ବେଗେ ବୁହା, ରେ ନାଉରି,
ନାଆ ହେଲା ଟଳମଳ;
ବରଷା ବତାସି ଗରଜି ଆସୁଛି,
ଝିଅକୁ ମାଡୁଛି ଡର ।"

ବରଷା ବତାସି ଗରଜି ଆସିଲା,
ନାଆ ନୁହେଁ ଥୟ କର;
ଏକା ପବନକେ ଧାହାଡ଼େ ଯାଇ ଲୋ,
ପିଟି ହୋଇଗଲା ଚୂର !

୬

ମେଘ ଗୁଚିଗଲା ମେଘର ବାଟେ ସେ,
ବତାସି ହୋଇଲା ଥିର;
ପଡ଼ିଗଲା ଖରା ନିର୍ମଳ ହୋଇ ଲୋ,
ପାଣି ବୁହଏ କଳ କଳ ।

ବାପା ଧରୁଥନ୍ତି ଖୋଜ୍ଜ ନାଉରି ରେ,
"ଝିଅ ମୋର ଗଲା କାହିଁ ?"
ବୁଜି ଆଖି ଠିଆ ନାଉରି ନଟଜ ଲୋ,
ତୁଣ୍ଡ ତା ଫିଟଇ ନାହିଁ ।

ଚିଲିକା ପାଣିରେ ଦୋଳୁଛନ୍ତି ଲହରୀ,
ବୋହୁଛନ୍ତି ଶୀତଳ ବାଆ,
ସୋର ସୋର ଖରା ଚଳିଯାଉଛି ଲୋ,
ଖେଳୁଛନ୍ତି ସହସ୍ର ନାଆ ।

ପାହାଡ଼ ଚଢ଼େଇ ଉଡ଼ୁଅଛି ଗିବ,
ମନେ କି ଅଛି ତା ଧୋକା ?
ପାଣି ତଳେ ଝୁଲି ବୁଲିଯାଉଛି ଲୋ,
ଜାଇଚି ନାହିଁଛି ଏକା ।

୨

ବାପା ଫେରି ଅସି ବୋଉଙ୍କ ଆଗର
କଥା ନ ପାରନ୍ତି କହି;
ଅର ଦିନ ଟୁଣି ନାଉରି ଗଲା ଲୋ,
ନାଆ ସେହି ବାଟେ ବାହି ।
କେତେ ଶ ବରଷ ହେଲାଣି ସେଦିନୁଁ,
ଗଣି କି କହିବ କିଏ ?
ନାହିଁ କିଛି ଆଉ ସେକାଳ କଥା ଲୋ,
ଜାଇ ରହିଅଛି ଜୀଏ ।
ବାଲୁଗାଆଁ କୂଳୁଁ ନାଆ ଗଲା ବେଳେ
ପାଟିକୁଦ ଗଡ଼ଠାକୁ,

ପାହାଡ଼ ସମୀପେ ମଣିଷ ଛୁଣ୍ଡି ଲୋ,
ନ ଶୁଣାଯାଏ କାହାକୁ ?
ବରଷା ବତାସି ଶଲକାରେ ଆଜ
ହୁଏ ନାହିଁ ଡେଙ୍ଗେ ଡ଼ଲି;
ଆପଦେ ବିପଦେ ଜଣା ପଡ଼ଇ ଲୋ,
ସାହା କଏ ଥିଲା ପରେ ।
ନାଜର କେଉଁଠି ପାହାଡ଼ ବାଟେ ତା
ନାଅ ନେଇ ଗଲା ବେଳେ,
କାମେ ଅପଣାର ଶୁଭ ମନାସି ଲୋ,
ଜୁହାର କରଇ ଥରେ ।

୮

ଚୋକିଲେ ପାହାଡ଼-ଶିଖେ କାଳେ ଭକ୍ତେ
ସୁନ୍ଦର ଦେଉଳଟିଏ;
ସେ ଦେଉଳେ ଲିଣି ସମ୍ବନ୍ଧେ ସତେ ଲୋ,
ରହିବ ଦେବତା କଏ ?
ସର୍ଯ୍ୟ ବୁଡ଼ିଗଲେ, ନଶବଦ ଯେବେ
ହୁଏ ସବୁ ସଞ୍ଜବେଳେ,
ଏକା ନହୋଇ କାଇ, ଲୋକେ କହନ୍ତି ଲୋ,
ବୁଲି, ଯେ ଥାଏ ପାହାଡ଼େ ।
ନେଣ୍ଟୁ ବୋହୁଥାଏ ଲହି ଦୁଇ ଧାର,
ଶୁଖି ଯାଇଥାଏ ମୂର୍ଦ୍ଧ;
ହେଲେ, ଠାର ହାତ, କାନ୍ଦେ, କାହାକୁ ଲୋ,
ନବଡ଼ାଇ କରେ ଅସ୍ତୁ ।

ସେ ଯୋଗେ ନୋହୁଛୁ କାଳଜାଈ ଗଣ୍ଡେ
ଭଡ଼େ ଅଭ ଝଡ଼ ବାଆ;
ତହୁଁ ବୁଡ଼ବାର ଶୁଣା ନ ଯାଏ ଲୋ,
ଯହୁଁ ଯେତେ ବୁଡୁ ନାଆ ।
କାଳଜାଈ ବଡ଼ ପ୍ରତ୍ୟକ୍ଷ ଦେବତା,
କୋଟି କୋଟି ଦଣ୍ଡବତ;
ପାହାଡ଼ର ନାଆଁ ସଇଜେ ଖ୍ୟାତ ଲୋ,
'କାଳଜାଈ ପରବତ' ।

---

# ଦୁଖିଧନ

ବର୍ତ୍ତମାନ ଛତ୍ରଗଡ଼ ଘାଟି ଓ ଗଞ୍ଜାମର ପଥର ଗ୍ରାମମଧ୍ୟରେ ଚଉଡ଼ା ଭୂମି ଭିତରକୁ ବହୁତ ପଶି ରହିଅଛି । ସୁନାଗଡ଼ ରାଜ୍ୟ ପୂର୍ବେ ସେହିଠାରେ ଥିବ । ସେଠାରୁ ୧ ଲି ଦୂରରେ ବାଣପୁରମଧ୍ୟରେ ସୁନାଖଳା ଓ ସୁନାକେରା ନାମରେ ଦୁଇଗୋଟି ସ୍ଥାନ ରହିଛି । ଗଞ୍ଜାମ ଜିଲ୍ଲାରେ ମଧ୍ୟ ସୁନାପଲ୍ଲି ଓ ସୁନାପୁର ପ୍ରଭୃତି ଗ୍ରାମ ଅଛି । ଛତ୍ରଗଡ଼ ଘାଟି ଓଡ଼ିଶା ଓ ମାନ୍ଦ୍ରାଜର ପ୍ରଦେଶ-ସୀମା ଥିଲା । ପରେ ଓଡ଼ିଶା ପ୍ରଦେଶ ଗଠିତ ହେବା ଫଳରେ ତାହା ପୁରୀ ଓ ଗଞ୍ଜାମ ଦୁଇ ଜିଲ୍ଲାର ସରହଦ ହେଲା । ତା ନିକଟରେ ଭୁଲେଶ୍ୱର ପର୍ବତ ଖୋଲରେ ନାରାୟଣୀଙ୍କ ପୀଠ । ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟ ହେବା ପରେ ଏ ପଦ୍ୟର ଶେଷାଂଶକୁ ଅବାନ୍ତର ମନେ କରାଯାଇପାରେ । ମାତ୍ର ପଦ୍ୟ ୧୯୧୮ ମସିହାରେ ଲିଖିତ ଓ ତାପରେ ଦୀର୍ଘ ଅଠର ବର୍ଷ କାଳ ଅବସ୍ଥା ପଦ୍ୟରେ ବର୍ଣ୍ଣିତ ବର୍ଣ୍ଣନାରୁ ପୃଥକ୍ ନ ଥିଲା ।

୧

ଚିଲିକା ପଶ୍ଚାରୁ କୋଶେ ମାତ୍ର ଦୂର
ଥିଲା ସୁନାଗଡ଼ ଗାଆଁ;
ଶହେ ଗାଆଁକେ ସେ ଗାଆଁ ଖଣ୍ଡିଏ ଲୋ,
ବଇବକୁ ଗୁହିଁ ନାଆଁ ।
ଦୁଇ ସାଇ ମିଶି, ଘର ଛଅକୋଡ଼ି,
ଛ କୋଡ଼ି ଜଅସ ଅବା;
ଖାଇ ପିଇ ସୁଖେ ଚଳନ୍ତି ଲୋକେ ଲୋ,
ଲାଗିଥାଏ ଦବା ନବା ।

ବଡ଼ ଭିହ୍ନି ମଧ୍ୟେ ଦଳେଇଙ୍କ ଘରେ,
ରାଇଜ ରଜାଙ୍କ ବାନ୍ଧା,
ସାଇ ପଡ଼ଶାଙ୍କ ସେନେହ୍ନା ଜନ ଲୋ,
ଦୁଖୀ ଭିଖାରିଙ୍କି ସାନ୍ଧା ।

ବଳଦ ବାମଣ୍ଡା ବଣେଇ କଟକ
ପାରଲା ଗଡ଼ ମଞ୍ଜୁଷା—
ଦେଶୁଁ ଦେଶେ ନିତ ସଭିଙ୍କ ମୁହେଁ ଲୋ,
ଦଳେଇଙ୍କ ପରଶଂସା ।

ଦେଶୁଁ ଦେଶ ବୁଲି ବାଟୋଇ ପ୍ରବାସୀ
ଅସନ୍ତି ଦଳେଇ ଘରେ;
ଧନେ ତ ଦଳେଇ ପଛାନ୍ତି ନାହିଁ ଲୋ,
କାକୁ ଚର୍ଚ୍ଚା କରିବାରେ ।

ଧନ ଜନ ଦହେଁ ଗିରେ ଶତ୍ରୁ ଭବେ,
କଏ କ.ନ ଜାଣେ କାହିଁ ?
ଧନ ରହୁଥାଏ ପୂରି ଯେ ଠାବେ ଲୋ,
ଜନ ତ ଅସଇ ନାହିଁ ।

ଦଳେଇଙ୍କ ଘର ଫାଟି ପଡ଼ୁଥାଏ,
ନାନା ବଇଭବେ ପୂରି;
ରୂପା କବାଟକୁ ସୁନା ଶିକୁଳି ଲୋ,
ଉଠେ ଦାଉ ଦାଉ ଜଳି ।

କେତେ ଯେ ଅତିଥି, ଅଭ୍ୟାଗତ କେତେ,
କେତେ ବନ୍ଧୁ ନଜ୍ଜର

ପୂରି ରହୁଥାନ୍ତି, ଉଆସେ ନାତ ଲୋ,
ଲାଗିଥାଏ ବିଭାଘର ।

୨

ଏତେ ବଇଭବେ ଦଳେଇଙ୍କ ମନେ
ସୁଖ ତ ନ ଥାଏ ତିଳେ;
ଦଶ ଦିଗ ତାଙ୍କୁ ଅନ୍ଧାର ଦିଶେ ଲୋ,
ତୁଚ୍ଛ ସବୁ ମହୀତଳେ ।
ସକଳ ସମ୍ପଦୁଁ ବଡ଼ ସମ୍ପଦ ସେ,
ପୁନଅଁ କହନ୍ତୁ ତୋରି,
ଦରିଦ୍ର ପସରି, ଅନ୍ଧ ଲଉଡ଼ି ଲୋ,
ବୁଡ଼ନ୍ତା ଲୋକର ଭେଳା;
ଗୃହେଁ ଯାହା ମୁହଁ ସଂସାର ଗଞ୍ଜଣା
ଦଣ୍ଡକେ ଯାଏ ପାସୋର,
ସେହୁ ନାହିଁ, ଘର ଶୋହା କରିବ ଲୋ,
ଉଆସ ଦିଶେ ଅନ୍ଧାର ।
ଦାନ ଧର୍ମ କେତେ କରନ୍ତି ଦଳେଇ,
ଧନକୁ ଗୃହାନ୍ତି ନାହିଁ;
ଘରଣୀ ତାଙ୍କର ବ୍ରତ ଉପାସେ ଲୋ,
କାଣ୍ଠା ଟି ଗଲେଣି ହୋଇ ।

୩

ଏହୁ ଭାବେ ଗଡ଼େ ଗଲା ଯେତେ ଦିନ,
ସେ ଦୁଃଖ କହିବ କିସ ?

ବୟସ ଖସନ୍ତେ ଘରଣୀଙ୍କର ଲୋ,
ହୋଇଲା ଗରଭବାସ ।

ତୁଣ୍ଡୁ ତୁଣ୍ଡେ ଯାଇ, ଦିନକେ ସେ କଥା
ଦେଶେ ହୋଇଗଲା ସ୍ୱର;
ଯେ ଶୁଣିଲା ସ୍ତ୍ରୋକେ କହିଲା ହସି ଲୋ,
"ଏଠି ମଙ୍ଗେ ବଳିଆର ।"

ଯେ ଯାହା ଦେଖଇ ଫୁଲ ଫଳ ପତ୍ର,
ଦିଏ ଅଯାଚତେ ଆଣି;
କି ଦ୍ରବ୍ୟେ କେଜାଣି ଶଧ ହୃଦୟେ ଲୋ,
ରଖିଥିବେ ସାଆନ୍ତାଣୀ ।

ଦଶ ମାସ ଆସି ପଶିଲା ଦିନୁଁ ତ
ଉଦ୍‌ବେଗ ବଢ଼ିଲା ମନେ;
ବିଳମ୍ବ ଅତି ସେ ନ ଯାଏ ସୁହା ଲୋ,
ଘଡ଼ିକ ଲାଗଇ ଦିନେ ।

ଦଶମ ମାସର ଆଠଦିନ ଗଲା
ଅଷ୍ଟ ଯୁଗ ପରି ଜଣା;
ନଅ ଦିନ ବଡ଼ସକାଳୁ ହେଲା ଲୋ,
ଗରଭ ଶୂଳ ବେଦନା ।

ଘଡ଼ିକ ଭିତରେ ଉଆସେ ସଭିଏଁ
ଦେଖନ୍ତି ଉପଣତ ବସି—
ମାଆଙ୍କ ଗରଭୁଁ ଭୂଇଁ ଉପରେ ଲୋ,
କୁମାର ପଡ଼ିଲା ଖସି ।

ଉଇଁ ସୂର୍ଯ୍ୟ ଆସୁଅଛନ୍ତି ପୂରୁବେ,
ଗବନ୍ତି କୋଇଲି କୁହୁ;
ମାଆ କୋଳେ ପୁଅ ଶୋଇ ଉଆସେ ଲୋ,
କାନ୍ଦେ ଗେଲେ କୁଆଁ କୁଆଁ ।

କୁମାର ଜନମ କଥା ଗଲା ବେଗେ
ଗାଆଁରୁ ଗାଆଁକୁ ଚାଲି;
ଦୂର ପାଖ ନାହିଁ, ସୁଅ ପ୍ରମାଣେ ଲୋ,
ଲୋକେ ଯେ ଅସନ୍ତି ମାଡ଼ି ।

୪

ଦଳେଇଙ୍କ ମନ ଉଚ୍ଛୁଳି ପଡୁଛି,
ହୋଇଛି ପୁଅ ଜନମ;
ଧରଣୀଙ୍କ ଆଗ ଶୁଖିଲା ମୁହଁ ଲୋ,
ଦଶେ କେଡ଼େ ପରସନ ।

ପୁଅ ଶୋଇଥାଏ ଏନ୍ଦୁଡ଼ିଶାଳେ ସେ,
ରତ୍ନପ୍ରଭମାଣି ଅବା;
ଅଙ୍ଗ ଦାଉ ଦାଉ ଦିଶୁଛି କେଡ଼େ ଲୋ,
କି ତାକୁ ଉପମା ଦେବା ?

ଧନ ସମ୍ପଦ ସେ ଭୋଗ କରଛନ୍ତି
ଦଳେଇ ଉଆସେ ନିତି;
ପୁତ୍ର ନିଧି ପାଇ, ଧନ ସମ୍ପଦେ ଲୋ,
ଲୋଭ ତ ଯାଉଛି ତୁଟି ।

ଧନ ଯା ଏ ମର୍ତ୍ତ୍ୟ ବୋଲନ୍ତି, ସତେ ସେ
ଦିନ ଦୁଇ କଥା ସିନା;

ଲକ୍ଷ୍ମୀଙ୍କ ନଗ୍ରହେ କୁବେର କେତେ ଥିଲେ,
ପିନ୍ଧୁଛନ୍ତି ଶଗ କନା ।
ଜନ୍ମ ଯେବେ ଥିବ, କୀରତି ଅର୍ଜିବ,
ଜଗତ ଘୋଷିବ ଯଶ;
ସଠି ଥିବ ଯେବେ କପାଳେ ଲେଖି ଲୋ,
ମଝେ ଉଣା ହେବ କିସ ?
ଏକୋଇଶା ଦିନ ନାଆଁ ଦିଆଯିବ,
ଲାଗିଛି ବହୁ ସମ୍ଭାର;
ବାଇଦ ମହୁରି ମଙ୍ଗଳ ସ୍ୱରେ ଲୋ,
ମିଶେ ଲୋକ କୋଳାହଳ ।
ଭାଇବନ୍ଧୁ ଜନେ ଖୁଆଇ ପିଆଇ
ଦଳେଇ କଲେ ମେଲାଣି;
ଦୁଖୀ ଭିଖାରୀଙ୍କି ଦେଲେ ସେ ତହୁଁ ଲୋ,
ଘରୁ ନାନା ନିଧି ଆଣି ।
ପୁଅ ରୂପେ ଏ ଯେ ସମ୍ପଦ ମିଳିଛି,
ତା ଭୁଲେ କିସ ସମାନ ?
ସେ ଲାଗି ଆଗ୍ରହେ ଦେଲେ ଦଳେଇ ଲୋ,
ପୁଅ ନାଆଁ 'ଦୁଖିଧନ' ।

୫

ଧନ ଅନ୍ତେ ଧନ ବଢ଼ି ଦୁଖିଧନ
ସୁନ୍ଦର ଦିଶେ ଏଭଳି;
ପଢପ ଚନ୍ଦ୍ରମା କଳା ପ୍ରମାଣେ ଲୋ,
ଆସୁଛନ୍ତି କି ଅବା ବଢ଼ି ।

ପଢ଼ିଲା ପୁଅଟି କ୍ରମେ ପାଠ କେତେ,
କେତେ ଅରଜିଲା ଗୁଣ;
ଯେ ଦେଖେ ଆନନ୍ଦେ ଗୃହେଁ ପଦ୍ମରେ ଲୋ,
କରେ ମନେ ଧନ୍ୟ ଧନ୍ୟ ।
ଏତେ ପରଶଂସା ଯଶ ଦଲେଇଏ
କିନ୍ତୁ ନ ପାରିଲେ ଦେଖି;
ଘର ବନ୍ଧୁ ଜନ ପୁଅମୁହଁଟି ଲୋ,
ପାସୋରି, ବୁଜିଲେ ଆଖି ।

୬

ଦୁଖିଧନ ମୃତ୍ୟେ ପଡ଼ିଲା ସେ ଅନ୍ତେ
ଘରର ସକଳ ଭାର;
କି କରେ ଦଇବ, ନ ବୁଝେ କିଛି ଲୋ,
ଅତି ଅବିବେକ ପରି !
ଦମ୍ଭେ ଦଲେୟାଣୀ ସହିଲେ ମଧ୍ୟରେ
ଗିରସ୍ତ ବିୟୋଗ ଦୁଖ;
ପଢ଼େ ନିଶିଦିନ ଗୃହ୍ଣିଲେ ନେନେଇ ଲୋ,
ବାଳୁତ କୁମର ମୁଖ ।
କୁମରେ ସେ କୋଳେ ବସାଇ କହନ୍ତି
ଯଶ ଗୁଣ ବାପାଙ୍କର;
ସାତ ପୁରୁଷର କୁଳ କୀରତି ଲୋ,
ବଖାଣି, କରନ୍ତି ଗେଲ—
“ରଜାଏ ରାଇଜେ ପାଳି ରଖିଛନ୍ତି
ପୁଅ ପରି ପରଜାଙ୍କୁ;

ସବୁଥିରେ ବଳ ଥାଆନ୍ତି, ବାବୁ ରେ,
ଚୋ ଡାକା ତାଙ୍କ ବାହାକୁ ।
ସ୍ୱଦେଶୀ ସଇନେ ଆସିଥିଲେ ଥରେ
ଏ ଦେଶ ଜିଣିମା ପାଇଁ;
ବଡ଼ବାପା ତୋର୍ ନ ଥିଲେ, ବାବୁ ରେ,
ମାନ ନ ଥାଆନ୍ତା ରହି ।
ଧନୁଶରହାତେ ପଶିଲେ ଯୁଦ୍ଧେ ସେ,
ଯୁଝିଲେ ଅତୁଲ୍ୟ ବଳେ;
'ସାହି ସାହି' ଡାକ—ବଇରୀ, ବାବୁ ରେ,
ଘୁଡ଼ ପଳାଇଲେ ଡରେ ।
ଆମ ରଜା ଯେବେ ଯାଆନ୍ତି ଦୂରଦେଶେ
ଜିଣିବାକୁ ଗଡ଼ମାନ,
ଆମର ପୂରୁବ ପୁରୁଷେ, ବାବୁ ରେ,
ଚାଲନ୍ତି ଯୁଦ୍ଧେ ସଇନ ।
ସେସବୁ ଭାରତ-କୁଳ ଗଉରବ,
ଭୁଲଇ ନାଇ ମୁଁ ବସି;
କେମନ୍ତେ ଟେକ ତୁ ରଖିବୁ, ବାବୁ ରେ,
ନ ଜାଣୁ ବାହୁତ କିଛି ?''

୭

ବସି ଦୁଖିଧନ ଶୁଣୁଥାଏ ସବୁ,
ଭୁଲଇ ଖବା ମଜର;
ଉଠି ଆସେ ଜ୍ୟୋତି ବେନି ନୟନେ ତେଜ,
କପାଳ ଦିଶେ ଉଜଳ ।

ଦିନବେଳେ ପୁଅ ଖେଳେ, ବୁଲେ, ପଢେ,
ଆନ କିଛୁ ଜାଣେ ନାହିଁ;
ସଞ୍ଜ ହେବା ମାତ୍ରେ ମାଆଙ୍କ କୋଳେ ଲୋ,
ବସଇ ଭୁନିଠି ହୋଇ ।
ସରଗ ରାଇଜେ ତରା ଅକଳନ୍ତ
ଦିଶୁଥାନ୍ତି ଦାଉ ଦାଉ,
ଆଙ୍ଗୁଠିରେ ମାଆ ଦେଖାନ୍ତି, "ପୁଅ ରେ,
ବାପା ବଡ଼ବାପା ଏହି ।"
ବାପା ବଡ଼ବାପା ଗଗନମଣ୍ଡଳେ
ରୁହିଁ ଦେଖେ ଦୁଖିଧନ;
କେଡ଼େ ତୋଫା ସର୍ବେ ଦିଶନ୍ତି, ଭାର ଲୋ,
ଛନ ହୋଇଯାଏ ମନ ।

୮

ମାଆ ପୁଅଙ୍କର କାଳ କେତେ ଗଲା
ସୁଖ ଦୁଖେ ଏହିଭଳି;
କେବଣ ରାଇଜୁଁ ଆସିଲେ ଦିନେ ଲୋ,
ବଇରି ସଇନେ ମାଡ଼ି ।
ସେ ବଇରି ସେନା ବଡ଼ ପରାକ୍ରମୀ
ସରି ତାଙ୍କ ତୁଲେ କାହିଁ ?
ଗଡ଼ ମଧ୍ୟେ ଯେବେ ପଶିବେ ଥରେ ଲୋ,
ଗଡ଼ ତ ରଖିବେ ନାହିଁ ।
ଯେ ଯହିଁ ଶୁଣେ ତା ସାରା ସୁନାଗଡ଼େ
ଡରେ ହୁଏ ଥରହର;

ବଇରି ପାଇକ ନାଁ ଶବଦେ ଲୋ,
କମ୍ପେ ବଣ ପଦା ଗଡ଼ ।

“ବଇରି ସଇନେ ଆସିଲେଣି ଏବେ,
ରାଜ୍ୟ ସାରା ଦେବେ ଧ୍ୱଂସି;
ମାରି ରଜାଙ୍କୁ ସେ ରାଜଗାଦିରେ ଲୋ,
ରାଜୁତି କରିବେ ବସି ।

ବଇରି ସଇନେ ଅତି ପରାକ୍ରମୀ,
କେ ତାଙ୍କୁ ହୋଇବ ସରି ?
ଦଳେଇଏ ଏକା ଥାଆନ୍ତେ ଯେବେ ଲୋ,
ବଢ଼ାଇ ଭାଙ୍ଗନ୍ତେ ତଡ଼ି ।”

ଗାଆଁ ଗଡ଼େ ଯେତେ ଯୋଗାଡ଼ ଚାଲିଛି
ସଇନ ସାମନ୍ତମାନ;
ଗଡ଼େ ନ ପଶୁଣୁ ବଇରି ଆଉ ଲୋ,
ଭାଙ୍ଗିତବା ଅଡ଼ାଆଇଲେଣି ।

ହେଲେ, ରଜାଙ୍କର ମହାଚିନ୍ତା ମନେ;
ଭୁଲେଣି ଏ ମୈତ୍ରୀ ଏକା—
ଦଳେଇଏ ଯେବେ ବଞ୍ଚିଥାଆନ୍ତେ ଲୋ,
କି ତାଙ୍କ ଥିଲଟି ଧୋକା ?

୯

ଚାଇ ଦୁଖିଧନ ମାଆଙ୍କ ଆଗର
କହଇ ଦୁଖିତେ ଅଳି—
“ରାଜନର ମାନ ସମ୍ପଦ, ମାଆ ଲୋ,
ସକଳ ଯାଉଛି ସରି ।

ବଇଶି ସଇନେ ଏଡ଼େ ବଳୀଆର,
ମାରିବେ ରଜାଙ୍କୁ ଯୁଝେଁ;
ସିଇଜର ଗାଦି ଖାଲି ତ ହୋଇବ,
ମାତ୍ର ସେ ବସିବେ ନିଜେ ।
ଦେହ ମୁଁ ଧରି ତା ସହିବ କେମନ୍ତେ ?
ଦିଅ ତୁ ଅନୁଜ୍ଞା ମୋରେ,
ଗଡ଼ ପଣ୍ଡଆରେ ଯାଇ ମୁଁ, ମାଆ ଲୋ,
ଯୁଝିବି ବଇଶି ତୁଲେ ।"

୧୦

ଶୁଣି କାନେ ମାଆ ପୁଅ-ଅଳି, ତୁଣ୍ଡେ
କଥା ନ ପାରନ୍ତି କହି;
ଶ୍ରାବଣର ନଦୀ ବହିଏ ନେତ୍ରୁ ଲୋ,
ଯାଏ ଲୁହଧାର ବୋହି ।
ଦଶ ମାସ ଗର୍ଭେ ଧରିଥିଲେ ପରା,
ସହି ଏ ଜଗତ ଦୁଖ;
ସବୁ ତ ସହିଛି, ଏବେ ବେଳକୁ ଲୋ,
ଯିବ ପୁଅଟିର ମୁଖ ।
ଜୀବନ୍ତେ ତାକୁ ସେ ପାରିବେ କେମନ୍ତେ
ଦେଖି ଯମଦୂତ ଆଗେ ?
"ଏ କଥା ଅନ୍ତେ କି" କାନ୍ଦି କହନ୍ତି ଲୋ,
"ବିଧି, ଲେଖିଥିଲୁ ଭାଗ୍ୟେ ?"
ଉଠି ଶେଷେ ମାଆ, ଧଇଲେ ପୁଅରେ
ଆଦରେ କୋଳକୁ ଆଣି;

ଥାପି ଗାଲେ ଓଠ, ଚୁମ୍ବି ଅଧର ଲୋ,
ନେତ୍ରୁଁ ବୁହାଇଲେ ପାଣି ।

ଗିରସ୍ତଙ୍କ ଯୁଦ୍ଧସଜ କାଢ଼ି ନେଇ
ପୁଅକୁ ଦେଲେ ପିନ୍ଧାଇ,
ତାଙ୍କରି ଭେଣ୍ଟିଲା ଖଣ୍ଡା ଫାରସା ଲୋ,
ଦେଲେ ପୁଅ ପାଖେ ଥୋଇ ।

ଆସିଥିଲେ ଯେବେ ପହିଲିଯାକା ସେ,
ଥିଲେ ଆଣି ଧନୁଶର;
ସେହି ଧନୁ ଏବେ ଶର ସଙ୍ଗତେ ଲୋ,
ଦେଲେ କାଢ଼ି ପୁଅ-କର ।

ବନଦୁର୍ଗାଙ୍କୁ ମା ଜୁହାରିଲେ ଯାଇ,
ସେ କୁଳ ଇଷ୍ଟଦେବତା;
କହିଲେ ପୁଅକୁ, "ଜୁହାର, ବାବୁ ରେ";
ପୁଅ କଲା ପ୍ରଣିପାତ ।

ଆଣି ଅଳ୍ପା ମାଳ, ପୁଅ ବେକେ ମାଆ
ପିନ୍ଧାଇଦେଲେକ ତହୁଁ;
କପାଳେ ଅଙ୍କିଲେ ସିନ୍ଦୂରଟୋପି ଲୋ,
ଜଳା ଦିଶେ ଦାଉ ଦାଉ ।

ପିନ୍ଧି ବୀରବେଶ, ଦୁଖିଧନ ଆଜ
ସୁନ୍ଦର ଦିଶଇ ଅତି;

ବୁକୁ ଦାଉଁ ଦାଉଁ ପଡ଼େ ମାଆଙ୍କ ଲୋ,
ଲେଉଟକେ ଯାଉଛନ୍ତି ତନ୍ତ୍ର ।

୧୧

କନ୍ଧକୁଳଚନ୍ଦ୍ର ଇନ୍ଦ୍ର ମହାପାତ୍ର
ରଣପୁର ନରନାହା
ବଇରି-ଗଞ୍ଜଣେ ପଛଏ ନାହିଁ ଲୋ,
ପଥର କରିଛି ହିଆ ।

ବାଣପୁରେ ଆସି ରଜାଙ୍କ ପୟରେ
ଶରଣ ପଶିଛି ନକ;
ସେ ରାଜନ ତହୁଁ ବାଠ ତା ପାଇଁ ଲୋ,
ଘୋଡ଼ ଦେଇଛନ୍ତି ଡାକ ।
ସତୁର ଶବ୍ଦ ସେ ଅଣିଛି ପାଇକ,
ଆସିଛି ବଡ଼ାଇ କରି;
ଖଲେଣ୍ଡ ନାସିକୁ ଟଳିକା ଯାଏ ଲୋ,
ଥାଟେ ତା ଅଛନ୍ତି ଦୂର ।

ଖଲେର ଘାଟି ସେ ପାର ହୋଇଗଲେ,
ନେବେ ଜିଣି ସୁନାଗଡ଼;
କହେ ଇନ୍ଦ୍ର ମହାପାତ୍ର ସଇନେ ଲୋ,
"ଘାଟି ପାରି ହୋଇ ଚାଲ ।"

୧୨

ସୁନାଗଡ଼ ଅତି ଛୋଟିଆ ମୂଲକ
ଗଞ୍ଜାମ ରାଇଜ ତଳେ;
ଘାଟି ଜଗି, ନୃପ ଖଜଣା ତକ ଲୋ,
ଘୋଡ଼ ଧାଇଛନ୍ତି ତଳେ ।

ନିଜ ଲାଗି ତାଙ୍କ ନୁହଇ ଖଟିଲଣି ,
　　ଖାଆନ୍ତି ସେ ପର ଦାନା;
ଗଲେ ନିଜ ପ୍ରାଣ ଯାଉ, ଉଡ଼ାଇ ନେଇ,
　　ଦେଶର ରଖିବେ ବାନା ।

ସତେ କି ବଇରୀ ପଶିବ ଗଇଜେ,
　　ସାଧିବ ଉଗାରପଣ ?
ବଡ଼ ଗାଆଁ ସବୁ ଲୁଟି କି ନେବ ନେଇ,
　　ପୋଡ଼ିବ ବଗିଚ୍ଚ ବଣ ?

ପରଜା ପାଇକ ହାଣିମ ନଣଙ୍କେ,
　　ରକତେ ବୁଡ଼ାଇ ମହୀ ?
ସ୍ତିରୀ କନ୍ୟା ସତେ ହେବେ ନିରେଖ ନେଇ,
　　ବଇରୀ ଗଇଜେ ରହି ?

ସେ ଲାଗି କହନ୍ତି ତାଙ୍କ ନରମନି—
　　“କେ କେଶରୀ ଅଛୁ ଏ ଗଡ଼େ,
ନିଜ ମୁଣ୍ଡ ପାଣି ଛଡ଼ାଇ, ଜଗିବ
　　ଘାଟିଦ୍ୱାର ଯାଇ ଭଲେ ?

ଧରିବ ମୋ ଛନ୍ଦ ଟେକି ଶିରେ ଭାର,
　　ବଇରୀ ଜାଣିମ ନକ—
ସୁନାଗଡ଼ ରଜା ଘାଟି ଜଗି ଉଭା,
　　ମୁଣ୍ଡେ ଛତ ଛନ୍ଦି ଟେକ ।”

୧୩

ଶୁଣି ଦୁଖିଧନ ହେଲା ଆଗଭର,
　　କହିଲା ମିନତି କରି,—

"ନିଜ ଜନ୍ମଭୂଇଁ ରକ୍ଷି ନ ପାରିଲେ,
କି ଲଭ୍ୟ ଜୀବନ ଧରି ?

ମର୍ତ୍ତ୍ୟମଣ୍ଡଳେ କି ଚିରଞ୍ଜୀବ କେବେ
ହୋଇଛନ୍ତି କେବଣ ଜନ ?
ଦିନେ ଆଗେ, ଦିନେ ପଛେ ସିନା ଆସି
ବାନ୍ଧି ନେଉଅଛି ଯମ ।

ଏଥକୁ ସଜନ ଭାଳେଣି କିପାଁ ହେ ?
ମନ୍ତ୍ରୀ ଛଡ଼ାଇଲା ପାଣି;
ଛାଡ଼ ଠେକି, ଘାଟିଦ୍ୱାର ମୁଁ ଜଗିବି;
ନାଉଛନ୍ତି ଦିଅ ମେଲାଣି ।"

ରାଜଗାଦି ଛତ୍ର କାଢ଼ି ନରମଣି
ଟେକିଦେଲେ ତା ହାତେ;
ସ୍ତୋକ ସଇନ ସେ ତାକ ପଛକୁ ନେଇ,
ଗର୍ଜି ଚାଲିଗଲା ବାଟେ ।

ଦେଖିଲେ ବଇରୀ, ବିଚାରିଲେ ମନେ,
"ଆସେ ସୁନାଗଡ଼ ରଜା";
ତିଆର ତତକ୍ଷଣେ ହେଲେ ଯୁଦ୍ଧକୁ ନେଇ,
ଉଡ଼ିଗଲା ଜୟ ଧୋଜା ।

୧୪

ଏଣେ ସୁନାଗଡ଼ ନରମଣି ବେନି
ସହସ୍ର ସଇନ ଧରି,

ଗୁଳନ୍ତ ଡୁଚାଡେ; ଆଉ ସେ କାହ୍ନୁଁ ଲୋ,
ଅଧିକ ପାଇବେ ଲୋଡ଼ ?

ଭଲେର-ଶିଖ ସେ ଝପିଗଲେ ଠିକେ
ନଈକୂଳ ବନ୍ଧ ପ୍ରାଏ;
ଖୋଲେ ନାରାୟଣୀ ନ ଥିଲେ ତେବେ ଲୋ,
ଥିଲେ ହୋଇଥାନ୍ତେ ସାହେ ।

ଆଉ ପଟେ ଶିଖୁଁ ଖସନ୍ତେ, ଦେଖିଲେ
ଦୂରେ ଭଗବତୀ'ପୀଠ;
ମୁଅଁ ମାଲ ଯାଶ, ଓହ୍ଲାଇଗଲେ ଲୋ,
ତେଇଁ ବଣ ଗୋହା ବାଟ ।

ବୁଲନ୍ତେ, ଦଶିଲ୍ଲ ଛାଳିଜାଇ ହାପୁ
ମନ୍ଦି ଶଲ୍‌କାରେ ଦୂରେ;
“ମାନ, ମା, ରଖିବୁ” କହି, ଛୁରିତେ ଲୋ,
ଗଲେ ସେ ଶଲ୍‌କାକୂଳେ ।

ଦେଖିଲେ, ବଇରୀ ଘାଟିଦ୍ୱାର ପାଶେ
ରୁଣ୍ଡ ହୋଇଅଛନ୍ତି ଠୁଳେ;
ନଦକେ କରୁଛନ୍ତି ସିଂହ ଗର୍ଜନେ ଲୋ,
ଯୁଦ୍ଧ ଦୁଖିଧନ ଛୁଲେ ।

ପଛୁ ନରମଣି ଚଳାଇ ସଇନ,
ଗଲେ ତୀର ବେଗେ ମାଡ଼ି;
ଜ୍ୟେଷ୍ଠ ମାସ ଆଦ୍ୟ ମେଘ ବରଷେ ଲୋ,
ଛାଡ଼ ଘଡ଼ଘଡ଼ ରଡ଼ି ।

ଶହ ଶହ କେତେ ପଡ଼ିଲା ବଇରି-
ମୁଣ୍ଡ ଛାଡ଼ି ଭୂଇଁତଳେ;
ଡରଭୟେ ଥୋକେ ପଶିଲେ ଯାଇ ଲୋ,
ବଣ ପରବତ ଖୋଲେ ।

ସତୁରି ଶହୁଁ ସେ ରହିଲେ ସାତ ଶ
ଧନୁ ଶର ଧରି ଉଭି;
ଭିଡ଼ି କାନ ପାଖେ ବିନ୍ଧନ୍ତି କାଣ୍ଡ ଲୋ,
କି ତାଙ୍କ କହିବି ପ୍ରଭି !

ଡାକି ପିଇଁ ପିଇଁ ସେ କାଣ୍ଡମାନ ତ
ବାଜେ ମହାକୋପେ ଯାଇ;
ସୁନାଗଡ଼ ଥାଉଁ ଜଣକୁ ଜଣ ଲୋ,
ଭୂଇଁରେ ପଡ଼ନ୍ତି ଶୋଇ ।

ରଣପୁର ନରସଣ ରହି ଆଗେ
ଯୁଦ୍ଧ କରୁଥିଲା ନାୟକ;
ମାରି ମନ କରି, ଛାଡ଼ିଲା ଶର ଲୋ,
ଇଷ୍ଟଦେବତାଙ୍କୁ ଡାକି ।

ବାଜିଲା ସେ ଶର ଦୁଖିଧନ ମୁଣ୍ଡେ,
ଭାଙ୍ଗିଲା କପାଳ ଭେଦି;
ଧରି ହାତେ ଛତ୍ର, ସେ ଦୁଖିଧନ ଲୋ,
ପଡ଼ିଗଲା ନେତ୍ର ମୁଦି ।

ସୁନାଗଡ଼ ରଜା ମଲେ ବୋଲି କଲା
ଇନ୍ଦ୍ର ମହାପାତ୍ର ତ୍ୱରି;

ନେଲେ ତାଙ୍କୁ ପଲ୍ଟଁ ସେତିକବେଳେ ଟେଲ୍,
ସୁନାଗଡ଼ ରଜା ଧରି ।
ଫେର ଗୃହେଁ, ସେଥୁ ଦେଖାଇ ବାଇର-
ହାତେ ପଡ଼ୁଅଛୁ ଧରା;
ନଇଁ ମୁଣ୍ଡ ଠିକେ ଲାଗିଲା ଉଡ଼ଲେ ଟେଲ୍,
ବୁଡ଼ୁଛୁ ଜୀବନ-ଭେଲା ।

୧୫

ସୁନାଗଡ଼େ ଆଜ ପଡ଼ୁଛୁ ଚହଳ—
"ଧନ୍ୟ ଦୁଃଖିଧନ ଅହା !"
ନେନ ଲୁହ ହାତେ ପୋଛୁ, ଶୁଣନ୍ତି ଟେଲ୍,
କାନେ ଦୁଖିଧନ ମାଆ ।
ଝୁରନ୍ତି, "ବାବୁ ରେ, ଗୃଳକ ତୁ ଗଲୁ,
ସାର ଏ ଜଗତ ଲୀଳା,
ଏକଇର ବଳା କୋଲକୁ ମୋର ରେ,
ଚଉଦ ବରଷ ପିଲା ?
ପୁଅ ବୋଲି ପର ଡାକ ମୁଁ ନ ଥିଲି
ସୁଖ ଶରଧାରେ ଦିନେ;
ଉଡ଼ ଯମ ନେବ ଏଡ଼େ ବେଗେ, ବାବୁ,
ବଗୁର କି ଥିଲି ମନେ ?
ଏ ଦେହ ଧର, ମୁଁ ବଞ୍ଚି କି ପାରିବି
ମୁହୂର୍ତ୍ତେ ମହୀରେ ସତେ ?
ତୁହ ଯେଉଁ ବାଟେ ଯାଇଛୁ, ବାବୁ ରେ,
ନେନ ବେଗେ ଯାଆ ମୋତେ ।"

ସେ ଦେହ ଧରି, କ ପୁଅ ଶନେ ମାଆ
ପାରନ୍ତେ ମହୀରେ ଜୀଇ ?
ମାଆ ପୁଅଙ୍କର ସରଗେ ସିନା ଲୋ,
ଭେଟ ପୁଣି ହେଲା ଯାଇ ।

ହେଲେ, ଦୁଖିଧନ ସଇଜର ମାନ
ରଖି ଏକା ଗଲା ହାତେ;
ଗଡ଼ଦ୍ୱାର ତେଉଁ ପଶିଲେ ଅରି ଲୋ,
ସବୁ ସରିଥିଲା ସତେ ।

୧୬

ବୁଢ଼ି ଦାଣି ତଳେ ସୁନାଗଡ଼ ଏବେ
ଯାଇଛି ଶଳିକା ହୋଇ;
ରଜା ପ୍ରଜା ଜଣେ ନାହାଁନ୍ତି କେହି ଲୋ,
ତା ଗୁପ୍ତ ଗରଭେ ଶୋଇ ।
ହେଲେ, 'ଛନଗଡ଼ ଘାଟି' ନାଆଁ ମର୍ତ୍ତ୍ୟେ
ପ୍ରକଟ ହେଉଛି ଆଜି;
ଛନ ହାତେ ଗଡ଼ ରଖି, କୁମର ଲୋ,
ଦଉଥିଲା ନେଜ ବୁଜି ।
ସେ ଘାଟି ପାଖକେ ରହିଅଛି ମାଆ,
ଅର ପାଖେ ଅଛି ଝିଅ;
ଜୀବ ଥାଉ ମଣେ ଭେଟ ନୋହୁଛି ଲୋ,
କେମନ୍ତ ବିଗ୍ଭର କହ ?
ମଧୁ ବାରିଷ୍ଟର ଶନ ଲେଖି ଘରେ
ରଖିଛି, ନାହିଁ କି ଦେଖି ?

ଓଡ଼ିଆଣୀ ବେଶ ପିନ୍ଧନ୍ତି ମାଆ ଲୋ,
ହିଅ ତେଲେଙ୍ଗାଣୀ ନାକ ।
ଜ୍ଞାନବନ୍ତ ଅତି ସେ ବୁଢ଼ା ମଧୁ ତ,
ଦେଶ ଶ୍ରେଷ୍ଠ ପୁଅ ଥୟେ;
ଏ ସଇଜ ଯାକେ ନାଆଁ ତା ଲୋକେ ଲୋ,
ଯୋଷି ହେଉଛନ୍ତି ମୃତେହିଁ ।
ଗୁଣ କୀର୍ତ୍ତି ତାର ଗାଇ ମୁଁ ବସିଲେ,
ହେବ ପୋଥିକର ପାଠ,
କେ ଲୋଡ଼ି ପଢ଼ିବ, କେ ଦେବ ଫିଙ୍ଗି ଲୋ,
ଜାଣି, କାହିଁ ଯିବ ବାଟ ।

୧୭

ବଡ଼ ହାନିମାନ ଆମ ଘର ଦଶା,
ଶୁଣିଲେ ଫାଟଇ ବୁକୁ;
ଚଉ ଖଣ୍ଡ ହୋଇ, ଓଡ଼ିଶା ଦେଶ ଲୋ,
ଟଉ ହୁଏ ଦୁକୁ ଦୁକୁ ।
ଗଣ୍ଡିରୁ ପଡ଼ୁଛି ଛିଣ୍ଡି ମୁଣ୍ଡ ଠାବେ,
ପାଦ ଚଉଅଛି କାହିଁ;
ହାତ ପୁଣି ଅନେ ଗଡ଼ୁଛି ସଢ଼ି ଲୋ,
ନେନେକ ନ ଦେଖ ଗୁହିଁ ?
ବଣ ପରବତ ନଈ ପଦା ବଳେ
ଉତ୍କଳ ସରଗ ପ୍ରାଏ
ଆମ ଏ ଓଡ଼ିଶା ଜନମଭୂଇଁ ଲୋ,
ହେଜୁ ମନେ ଥିବ ଥୟେ ।

ସେହି ସେ ଜନମଭୂଇଁ ମା ଆଦର
ଦଇନେ ଡ଼େଉଛନ୍ତି ଆହା !
ପୁଏ କାନ୍ଧ ତଳେ ଲୋଟନ୍ତି ଦୁଖେ ଲୋ,
ଦେଖି କେ ହେଉଛନ୍ତି ସାହା ?

୧୮

ଜୀଇଥିଲେ ସେବ ଗଞ୍ଜାମ ସଜନ,
ପାରି କି ଥାଆନ୍ତେ ସହି ?
ଏବେ ତାଙ୍କ ପୁଏ ସଜୁଡି କରି ଲୋ,
ରହନ୍ତି ଉନଟି ହୋଇ ।
ହାକମ ହୁକୁମା ଲୋଡ଼ି ଧୂପ ଦୀପେ
ପୂଜନ୍ତି ଭଗତପଣେ
ଲକ୍ଷେ ପରଜାଙ୍କ ମଉଡ଼ମଣି ଲୋ,
ବୁଝି ନ ପାରନ୍ତି ମନେ ।
ଦେବତା ବୈଷ୍ଣବେ ନାକ ଟେକୁଥାନ୍ତି,
ବଇର ଧରନ୍ତି ଶତ୍ତେ;
ଦେଉଳ ମଣ୍ଡପ ବାପ ଅମଳୁଁ ଲୋ,
ଭାଜି ପଡ଼ୁଅଛନ୍ତି ଯେତେ ।
ଡୋଳାଇ ନଅର କରନ୍ତି ଅଛବ—
ନାଆଁ ଅନୁରୂପେ ତାଙ୍କୁ;
ରଜା ହୋଇ, ପର ଫିରିଙ୍ଗି ଧନେ ଲୋ,
ଫୁଲାଇ ଗୁଲନ୍ତି ବୁକୁ ।
ଦରବାରେ ବସି, ମସୁଦା କରନ୍ତି
ସାଇବସୁବାଙ୍କ ତୁଲେ;

ପେଟେ ବିଦ୍ୟା ଥିଲେ, କଥା କଥାକେ ଲୋ,
ସଢ଼ କି ଯାଆନ୍ତେ ତରେ ?
ଜାଣିଥିବ, ଘୋଷି ଖାଠିଏ ଶୋଳଣି
ପଢ଼େ ପଞ୍ଜୁରିରେ ଶୁଆ;
ବିପଡ଼ ଦେଖିଲେ, ବୁଦ୍ଧି କି ସ୍ଫୁରେ ଲୋ ?
ହୋଇଯାଏ ଅଗୃବୁଆ ।

ବୋଲନ୍ତି ପରଜା ପାଖେ ସିନା ରଜା,
ନଣ ମୋଡ଼ୁଥାନ୍ତି ବାଙ୍କେ;
ଶାର୍ଦ୍ଦୂଲ ହାବୁଡ଼େ ପଡ଼ିଲେ ଯାଇ ଲୋ,
ଶିଆଳ ବନନ୍ତି ଠିକେ ।

ପରଜା ରକତ ଠୋପା ଠୋପା ଦେଇ
କିଣି କଲ ଧୂଆଁ ଗାଡ଼ି
ମହୁରି ବଜାଇ ଗାଆଁ ବନନ୍ତେ ଲୋ,
ଅଙ୍ଗେ ଯାଉଛନ୍ତି ଗୁଲି ।

ଦେବାର୍ଚ୍ଚନ ତ୍ୟଜ୍ୟା କରି, ପର ପାଦ
ଧରି ରହୁଛନ୍ତି ସୁଖେ;
ଋଣୀ ହାତ ବନ୍ଧା ଫିଙ୍ଗି, ମୃଣୋହ୍ନ ଲୋ,
ଅମେଧ କରନ୍ତି ଥୋକେ ।

ଧର୍ମାଧର୍ମ ଯେତେ ଖୋଜି ଲେଖି ଗଲେ,
ପୋଥି ଥୁଆ ହେବ ଶହେ;
ଚିତ୍ରଗୁପ୍ତେ ଦଣ୍ଡ ବିହିଲ୍ଲ ବେଳେ ଲୋ,
ପଡ଼ି ଜାଣିନେବେ ଅସ୍ତେ ।

୧୯

ମରି ଯାଉଛନ୍ତି ମର୍ଦରାଜ ରଜା,
ହୋଷୁଁ ହୋଇଛନ୍ତି ପାରି;
ହେଲେ, ଯାଉଛନ୍ତି ଲକ୍ଷେ ମଜୁଡ଼ି ଲୋ,
ଅଲଭ୍ୟେ କରଜା କରି ।

ପୁଏ ତାଙ୍କ ଏବେ ନ ଶୁଝି ପାରି ତା,
ରଖନ୍ତି ଗୋସ୍ୱ ପାଞ୍ଚିଅ;
ଭାରିଯା ଅଡୁ ତା ଚିହ୍ନନ୍ତି ଲୋକେ ଲୋ,
ଭେଖେ ନ ଧରନ୍ତି ନାଆଁ ।

ତେବେ ତରି ଥରି ବନ୍ଧନ୍ତି ଘାଇଜେ,
ଦଇନ ସହନ୍ତି କେତେ;
ଗୁହାରି କା ଆଗେ କରିବେ ଯାଇ ଲୋ ?
ପିଠି ଫାଟିଯିବ ବେତେ !

ଛନଗଡ଼ ଘାଟି ମୁଣ୍ଡେ ତ ବସିଛ
ଖୋଲେ, ମାଆ ନାସୁଣି !
ଦଆଁ ହୋଇଥିଲେ, ବୁଝିବ ପିଲେ ଗୋ,
କି ଦୁଖେ ନାହାନ୍ତି ପୁଣି ।

ଦୁଖିଧନ ବୁକୁ ରକତେ ଯେ ମାଟି
ରଙ୍ଗ ହୋଇଅଛି ଦନେ,
ସରଗୁଁ ବଡ଼ ସେ; ଦଇନେ ତହୁଁ ଗୋ,
ମଝେ କି ରଖିବ ଜଣେ ?

# ମାମୁ ଭଣଜା

ମାମୁ ଓ ଭଣଜା ପାହାଡ଼ ଉଭୟଟି ବାଣପୁରମଧ୍ୟରେ ବାଲୁଗାଁ ନିକଟରେ । ପ୍ରବାଦ ଅଛି ଯେ, ମାମୁ ପାହାଡ଼ ଦିନକୁ ଦିନ ଆକାରରେ ଛୁଟୁଛି ଓ ଭଣଜା ପାହାଡ଼ ବଢ଼ୁଛି । ଖଣ୍ଡାଧାର ପର୍ବତ ଖୁବ୍ ଉଚ୍ଚ । ତା ଶିଖ କଷ୍ଟ ହୋଇଥିବା ପରି ଜଣେ । ତାହା ବାଣପୁର ଓ ଘୁମୁସର ସୀମାରେ ଅବସ୍ଥିତ । ନିକଟରେ ବାଣପୁର ପଟ୍ଟରୁ ବାରଜାଇ ଠାକୁରାଣୀଙ୍କ ଦେଉଳ । ବାରଜାଇ ବଣଭିତରୁ ବର୍ତ୍ତମାନ ବାଲୁଗାଁକୁ ଯେଉଁ ସଡ଼କ ପଡ଼ିଛି, ତାହା ପ୍ରତାପ, ମାଣିକପୁର, ବାଲୁଦେଶ୍ୱର ଦେଉଳ, ଜଗମୋହନ ପୋଖରୀ ଓ ବାଣପୁର ବାଟେ ଯାଇଛି । ଜଣାଯାଏ, ପୂର୍ବେ ସେହିଠାରେ ଯାତାୟାତ କରିବା ନିମନ୍ତେ ଗୋଟିଏ ବର୍ତ୍ମ ଥିଲା । ଉମାମହେଶ୍ୱର ଦେଉଳ ବାଲୁଗାଁରେ । ସିଂହେଶ୍ୱର ଗ୍ରାମରେ ସିଂହନାଥ ନାମରେ ମହାଦେବ ଅଛନ୍ତି । ଏ ସକଳ ସମ୍ପର୍କରେ ନାନା କିମ୍ବଦନ୍ତୀ ରହିଛି । କେତେକ ଲୋପ ମଧ୍ୟ ପାଇ ଅଛନ୍ତି ।

୧

ନୀଳାଚଳ କ୍ଷେତ୍ର ଏ ମର୍ତ୍ତ୍ୟମଣ୍ଡଳେ
ସକଳ କ୍ଷେତ୍ରରୁ ବଳି;
ଜଗନ୍ନାଥ ବଡ଼ଠାକୁର ଯହି ଲୋ,
ବସନ୍ତି ରାଜୁତି କରି ।
ସନ୍ଥ ପାଳି, ଦୁଷ୍ଟ ଦଇତେ ମାରନ୍ତି,
ତୁଳି ଦୋଷ ଗୁଣମାନ;
ପାପୀକି ନରକେ ପକାଇ, ସ୍ୱର୍ଗେ ଲୋ,
ବସାନ୍ତି ପୁଣ୍ୟାତ୍ମା ଜନ ।

ସୂର୍ଯ୍ୟ ଚନ୍ଦ୍ର ବାଆ ବରଷା ଜଗତେ
କରନ୍ତି ସେ ଅତଯାତ;
ଇନ୍ଦ୍ର ବୃହସ୍ପତି ବ୍ରହ୍ମା ବରୁଣେ ଲୋ,
ଖଟନ୍ତି ଶ୍ରୀପଦେ ନିତ୍ୟ ।
କୈଳାସୁଁ ଦେବତା ଅସନ୍ତି ଓହ୍ଲାଇ
ଦର୍ଶନ ପାଇବା ପାଇଁ;
ନର ଲୋକ ଯେତେ ଛିତି ମଣ୍ଡଳୁଁ ଲୋ,
ରୁଣ୍ଡ ହେଉଥାନ୍ତି ତହିଁ ।
ବାଜେ ବାଉଦାଜା ମର୍ଦ୍ଦଳ କାହାଳୀ
ସରଗ ଦୁନ୍ଦୁଭି ତାନେ;
ବାଇଶି ପାହାରେ ମହାପ୍ରସାଦ ଲୋ,
ଭୁଞ୍ଜନ୍ତି ଜଗତ ଜନେ ।
ବଡ଼ଦେଉଳେ ଯେ ବସାନ୍ତି ଅଗ୍ରହେ
ଏକାଦଶୀ ମହାଦୀପ;
କୋଇଲବୈକୁଣ୍ଠେ ଅଟିକା କରି ଲୋ,
ଦେଖନ୍ତି ଅଲତି ଧୂପ ।

୨

ଚିଲ୍‌କା ପଶ୍ଚିମ ପଡ଼ା କୂଳ ମାଲେ
ଖ୍ୟାତ ବାଣପୁର ଦେଶ;
ବାଣାସୁର ତହିଁ ରଜୁତି କରିବ ଲୋ,
ସ୍ୱଭାବେ ଅସୁର ଅଂଶ ।
ପାଖକେ ଚେଲେଟି, ପାଖକେ ଭ୍ରଲେର,
ଅଜ ପାଖେ ଖଣ୍ଡା ହଣା;

ଏକୁଁ ଆନ ବଳ ଉନ୍ନ ପର୍ବତ ଲୋ,
ନାହିଁ ନ ଥିବ ଉପମା ।

ସାଳଆ ନଈଟି ବୋହି ଯାଉଅଛି,
ଭେଦ ବଲ ପଦା ବନ;
ଶଲ୍କା ପରଶେ ତାଳଦେଉଛି ଲୋ,
ତା ଟିକ ତରଳ ପ୍ରାଣ ।

ବାଣାସୁର ତହିଁ ସ୍ନାହାନ କରଇ,
ଭୁଞ୍ଜଇ ଘ୍ରଲେହ-ଶିଖେ;
ସୋଲେର ପର୍ବତ-ଖୋଲେ ଗ୍ରତକ ଲୋ,
ଶୁଏ ପୁଣି ଯାଇ ସୁଖେ ।

ଧନେ ପାର୍ଶ୍ୱରେ ଉଢ଼ ମହାବଳ,
ଗର୍ଜି ବାଜୁଥାଇ ବିଶେ;
ଉଢ଼େ ମହାବଳ ପର୍ବତ ଝେପି ଲୋ,
ସେହି ବାଣାସୁର ମନେ ।

ଧରି ଖଣ୍ଡା ହାତେ ଛେଦଲ୍କ ପର୍ବତ;
ଧଇଲା ଜନ୍ତୁକୁ ବଳେ;
ସେହି ଦିନୁଁ ଖ୍ୟାତ ପର୍ବତ ନାଆଁ ଲୋ,
'ଖଣ୍ଡାହଣା' ମହାତଲେ ।

ଖଣ୍ଡାହଣା-ଶିଖେ ବସିଲେ, ଯାଏ ଟି
ସାରା ବାଣପୁର ଦେଖା;
ଦେଖି ବାଣାସୁର କହେ ଉଲ୍ଲାସେ ଲୋ,
"ଏ ଭୂଇଁ ସରଗ ଏକା ।"

୩

ଘୁମୁସର ରଜା ଯମ୍ନେଶ୍ୱର ସିଂହ
ମତ୍ତୈ୍ୟ ମହା ପାରଙ୍ଗମ;
ଡରି କେତେ ରଜା ରହନ୍ତି ତାଙ୍କୁ ଲୋ,
ଦେବ ଲୋକେ ଡରେ ଯମ ।

ନ୍ୟାୟବଳେ ପୃଥ୍ୱୀ ପାଳନ୍ତି କୁଶଳେ,
ରଖନ୍ତି ପରଜା ତୋଷି;
ଦେବତା ବୈଷ୍ଣବେ କରନ୍ତି ପୂଜା ଲୋ,
ସୁବର୍ଣ୍ଣ ଗାଦିରେ ବସି ।

ବାପା ତାଙ୍କ ଥିଲେ ମହେଶ୍ୱର ସିଂହ;
ଅତୁଲ୍ୟ ପ୍ରତାପ ବଳେ
ବାଣପୁର ଥରେ ଜିଣି ସେ ଥିଲେ ଲୋ,
ଯୁଝି ବାଣାସୁର ତୁଲେ ।

ବାଣାସୁର ଘରୁ ନେଇ ତା ଭଉଣୀ,
ହାତ ତା ଥିଲେଟି ଧରି;
ସୁବର୍ଣ୍ଣ ଗାଦିରୁ ଅଧକେ ଥାପି ଲୋ,
ଥିଲେ ପାଟରାଣୀ କରି ।

ସେହି ରାଣୀ ପୁଅ ଯମ୍ନେଶ୍ୱର ସିଂହ
ଘୁମୁସର ନୃପବର;
ରକତ ମାଝିଁସେ ଭଣଜା ସେହୁ ଲୋ,
ମାମୁଁ ରଜା ବାଣାସୁର ।

୪

ପୁରୁଷୋତ୍ତମ ଷେତ୍ରେ ଯିବେ ଯମେଶ୍ୱର
ମହାପ୍ରଭୁ ଦର୍ଶନ ପାଇଁ;
ବାଣପୁର ଦେଶେ ଗ୍ଭଲନ୍ତି ପାଦ ଲୋ,
ଦମ୍ଭେ ଖଣ୍ଡାହଣା ଦେଇଁ ।

ବାଜୁଅଛି ଶଙ୍ଖ ବାଇଦ କାହାଳୀ,
ଛତ୍ର ଚାମର ଉଡ଼େ ଉଡ଼;
ଗାଆଁରୁ ଗାଆଁକୁ ଘର ଘରଣୀ ଲୋ,
ଦେଉଛନ୍ତି ହୁଳହୁଳି ।

ଭଣଜା ସ୍ୱଜନ ଆସୁଛନ୍ତି ଦେଶେ—
ଉଧର ହୁଅନ୍ତି ଜନେ,
ଫୁଲ ବରଷନ୍ତି ଯିବାର ବାଟେ ଲୋ,
ଶୁଭ ମନାସନ୍ତି ମନେ ।

ପ୍ରତାପ ବଣୋଇ ବୀରଭଦ୍ର ସାଣି,
ମାଣିକ ଦଳବେହେରା
ଅଧ ବାଟୁ ମାନେ୍ୟ ପାଛୋଟି ଆଣି ଲୋ,
ଆଗେଇ ଦଅନ୍ତି ତ୍ୱରା ।

ବାଲ୍ମୀକେଶ୍ୱରଙ୍କ ଦେଉଳୁ ସେବକେ
ପ୍ରସାଦ ଦଅନ୍ତି ହାତେ;
ଭେଟେ ମଣିପୁର ମାଆଙ୍କର ରଥ ଲୋ,
ନଡ଼ିଆ ପଇଡ଼ ବାଟେ ।

ଜଗମୋହନର ତଳ ପାଖେ ତଳ
ଶାସନ ନ ଥିଲା ବସି;
ନୋହିଲେ, ଘୁମୁରେ ଭେଟିବାକୁ କି ଲୋ,
ନ ଥାନ୍ତେ ବ୍ରାହ୍ମଣେ ଆସି ?
ଏବେ ସିନା ସବୁ ପଦା ହୋଇଗଲା,
ଫିଟିଲା ସଡ଼କ ବାଟ;
ସେତେବେଳେ ଖାଲି ବଣ ତଇଲା ଲୋ,
ବାଘ ତହିଁ କରେ ନାଟ ।

ଭଗବତୀଙ୍କର ନ ଥିଲା ଦେଉଳ,
ଥିଲେ ଗଛମୂଳେ ବସି;
ଏବେ ଏ ଦେଉଳ ହଉମାନ୍ୟରୁ ଲୋ,
ଭଣ୍ଡାରେ ନ ଥିଲେ କିଛି !

ଏବେ ସିନା ରୋଷେ ନ ଜଳିଲା ଚୁଲି,
ନ ଲାଗିଲା ସଞ୍ଜଦୀପ,
ପିଠା ପଣା ସବୁ ସପନ ହେଲା ଲୋ,
ବୁଡ଼ିଲା ଚନ୍ଦନ ଗୁପ ।

ପାଞ୍ଚ ଧୂପ ତଳ ଅଳତି ଦିନକେ
ନିୟମ ପ୍ରମାଣେ ପାଇ,
କେଡ଼େ ବନ୍ଧୁମାନେ ନ ଥିଲେ ସେବେ ଲୋ,
ମନେ କି ପଡ଼ଇ ନାହିଁ ?

ଜଗତ ଲୋକଙ୍କ ମାଆ ହୋଇ, ପୀଠେ
ଦଇନେ ବହନ୍ତ ନିତି;

ବାଙ୍କ ଗୃହିଣୀରେ ଅନାଇଦେଲେ ଲୋ,
କାହିଁ କ ନୋହିବ ଗତି ?

ବାଆଁ ହାତ ପଟେ ସେ ଦେବୀ ପୀଠ ତ
ରହିଗଲା ଖଣ୍ଡେ ଦୂରେ;
ଧଣ୍ଡା ମାଳ ଧରି, ଅଧ କୋଶକେ ଲୋ,
ମିଳିଲେ ମାଳୀ ସୁଅରେ ।

ଫେରିଲେ ଶ୍ରୀକ୍ଷେତ୍ରୁ ସମର୍ପଣ ଲାଗି
ଅଣିଚେ ମହାପ୍ରସାଦ;
ଯିବେ ସନମାନେ ଦର୍ଶନ କରି ଲୋ,
ବନ୍ଦାଇ ସୁବର୍ଣ୍ଣ ପାଦ ।

ନୋଇଲେ, କ ନୃପ ନ ଦେଖି ସେ ପୀଠ
ବାଟେ ଯାଉଥାନ୍ତେ କାହିଁ ?
ଅଷ୍ଟ କଳାରୁ ତ କଳାଏ ସେହୁ ଲୋ,
ବାଣପୁର ଭଗବତୀ ।

ଉମାମହେଶ୍ୱର ଆମ୍ବତୋଟା ତଳେ
ଥାପିଲେ ରାଜନ ଡେରା;
ନାଅ ସଜ ହେଲେ ଚିଲିକା ବାଟେ ଲୋ,
ପାରି ହୋଇ ଯିବେ ଏରା ।

ଚିଲିକା ଯେ ପାରି ହୋଇଗଲେ, ହେବେ
ବଜେ ଯାଇ ମୀ ଲାଗଲେ;
ନୀଳାଦ୍ରିନାଥଙ୍କ ଦର୍ଶନ ସାରି ଲୋ,
ପୁଣି ବାହୁଡ଼ିବେ ଗଡ଼େ ।

୫

ସୋଲେର ଏଟ'ତ ଖୋଲେ ବାଣାସୁର
ବେଷେ ଅଗ୍ନିଶର୍ମା ହୋଇ,
କହଇ; ତା କଥା ପଦ ପଦକେ ଲୋ,
କର୍ଣ୍ଣ ଜୁଡ଼ୁଅଛି ମନ୍ତ୍ରୀ ।

"ବାଟ ନୁହେଁ ମୋର ଏ ସୁନା ରାଇଜ
ନୀଳାଦ୍ରି ଦର୍ଶନ ଲାଗି;
ପାପ ଅପଣାର ଛଡ଼'ଇବ, ସେହି
ପାପେ ମୋରେ କର ଭାଗୀ ।

ଦେଖିବ କେମନ୍ତ ଚତୁର ସଜନ
ଧୂମ୍ରସର ନରନାହା;
ବର୍ଣ୍ଣି ସେ ଶଳିକା ପାର ତ ନୋହିବ,
ହେଉ ପଛେ ହେବ ଯାହା ।

ମାମୁ ବୋଲି ମୋରେ କହି ପଠାଇଛନ୍ତି,
ଏଡ଼କ ଗରବ ସିନା;
ମାମୁ ସେ କି କରିପାରେ ରୁଷ୍ଟ ହେଲେ,
ଆଜି ପଡ଼ିଯିବ ଜଣା ।

ଶୂଳ, ଟେ ପାଇକେ, ଖଣ୍ଡାୟୁତ ବୀରେ,
ଭାଙ୍ଗିବା ବଇରି-ବଳ;
ଦେଖାଇବା ତାରେ ବାଣପୁର ସେନା
ମର୍ତ୍ତ୍ୟେ କେଡ଼େ ବଳିଆର ।"

୬

ବଳିଆର ଅତ ବାଣପୁର ସେନା,
ବାଣାସୁର ତଳେ ରହି;
ନିଜ ଦେଶ ମଧ୍ୟେ ବଇରି-ପାଦ ଲୋ,
ପଡ଼ିବାକୁ ଦିଅନ୍ତି ନାହିଁ ।

ଛବଗଡ଼ ଯାକି ସେ ଏବେ ଗଞ୍ଜାମ—
ସଜନ ରହନ୍ତି ଡରି;
ନୂଆଗଡ଼, ରଣପୁରରେ ସେ ନୃପେ ଲୋ,
ଭୟେ ଯାଉଥାନ୍ତି ଥରି ।

ଜଣିଥିଲେ ଥରେ ଘୁମୁସର ରଜା,
କପାଳ ଥିଲାରୁ ତ୍ରାଣ;
ହେଲେ, ବାଣାସୁର ନାଆଁକୁ ନିତ ଲୋ,
ହେଉଥାନ୍ତି କମ୍ପମାନ ।

'ରକ୍ତବାହୁ' ନାମେ ଅସୁର ରଜା ସେ
କେବଣ ଦୂରରୁ ଆସି,
ଲହଡ଼ି ମଡ଼ାଇ ଅଧ କୋଶକୁ ଲୋ,
ଥିଲା ଶଳକାରେ ପଶି ।

ଦୂର ଲୋକେ ଯାହା କହନ୍ତି ମଲା ସେ
ଶଳକା ବତାସି ପାଣ୍ଡେ;—
ପରଚ୍ଛସ୍ତ୍ରେ ସେ ତ ଜଡ଼ା ଖବର ଲୋ,
ପ୍ରତେ ଯିବ ନାହିଁ ତଳେ ।

ମୁଁ ଯାହା କହୁଛି ସତ ମଣେ ଏହା,
କଥା ମୁଁ ଜାଣିଛି ଟିକେ;

ପାରିକୁଦ ବୁଢ଼ା ରଜନ ଲେଖି ଲୋ,
ପୋଥି ରଖିଥିଲେ ପାଖେ ।
ବଡ଼ ସତ୍ୟ ଲୋକ ସେ ବୁଢ଼ା ରଜନ,
ଅଛନ୍ତି ସେନେହୀ ଦଶେ;
ତାଙ୍କ କଲିକତା ବଜେ ସମ୍ଭାର ଲୋ,
ଶୁଣିଲେ, କହିବ ଦଶେ ।

କହୁ ଯେବେ ଆଜ ବସିବ ସେ କଥା,
ବେଲ କି ଅଣ୍ଟିବ କେବେ ?
ରକ୍ତବାହୁ କଥା ଅଧା ହୋଇଛି ଲୋ,
ଶୁଣ, କହୁଅଛି ଏବେ ।

ଭାଙ୍ଗିଲେ ବଢ଼ାଇ ଘଡ଼ିକ ଭିତରେ
ବାଣପୁର ଖଣ୍ଡାଯୁଦ୍ଧେ;
ଶିଶୁପାଳ ପ୍ରାଏ ସେ ରକ୍ତବାହୁ ଲୋ,
ହାରି ଲେଉଟିଲା ସତେ ।

ପଳାନ୍ତେ, ସଇନ ପାଦଘାତେ ଘାସ
ଗଲା ଭୂଇଁ ତଳୁ ମରି;
ପାରିକୁଦ ଗଡ଼େ ସେ ଦିନୁଁ ଅଜ ଲୋ,
ନାହିଁ ସେ ଘାସ କଅଁଳା ।

ଏଡ଼େ ବଳିଅର ବାଣପୁର ହେନା,
ବଣ ଘୋଡ଼ା ଖୋଲେ ରହି;
ନିଜ ଦେଶ ମଧ୍ୟେ ବଇରି ପାଦ ଲୋ,
ପକାଇ ଦିଅନ୍ତି ନାହିଁ ।

୭

ସେହ୍ନୁ ବାଣପୁର ପାଇକେ ତ ଅଜ
ଶଲ୍‌କାର ପନ୍ତା କୂଳେ
ବାଣାସୁର ଡାକେ ଯୁଝନ୍ତି ରୋଷେ ଲୋ,
ଘୁମୁସର ଥାଟ ଭୁଲେ ।

ଘଡ଼ରୁ ଘଡ଼କ ଘୋଟିଁ ଅସେଁ ଯୁଝ,
କମ୍ପି ଉଠେ ବସୁନ୍ଧରା;
ଘଣ୍ଟଶିଳା-କୂଳେ ଘଣ୍ଟ ବାଜଇ ଲୋ,
ପାଇକ ସେନା ହକାରି ।

ବଣ ଗୋଦା ଖୋଲ୍ଲ ଗଡ଼ନ୍ତି ଧାଇଁକେ,
ଧରି ଧନୁଶର ହାତେ;
ଆଗ ପଛେ ଭିଡ଼ ଏକା ଗୁଣକେ ଲୋ,
ବନ୍ଦନ୍ତି ବଇରୀ ଥାଟେ ।

ବଇରୀ ଥାଟେ ସେ ବଡ଼ ବନ୍ତୁଅଛି;
ହେଲେ, କି କରିବେ ଅଜ ?
ଗବ ଗଜା ପ୍ରାଏ ବତାସି ମୂହେଁ ଲୋ,
ପଡ଼ି ଯାଉଛନ୍ତି ଭାଜି ।

ଶଲ୍‌କାର ପାଣି ମଣିଷ ରକ୍ତେ
ରଙ୍ଗ ଯେ ଯାଇଛି ହୋଇ;
ମୁଣ୍ଡମାଳ ତଳେ ଗଡ଼ଇ ଖାଲି ଲୋ,
ଭୂଇଁ ତ ଦଶଇ ନାହିଁ ।

୮

ହାର ଯମ୍ନେଶ୍ୱର, ଅଶୀ କୋଣ ପୃଥ୍ୱୀ
ଘୁମୁସର ନରନାହା,
ବାଣାସୁର ଅଗେ ପ୍ରବେଶ ଅସି ଲୋ,
କାୟା ନାହିଁ, ଅଛି ଛାୟା ।
ସଜ ଶେଷ ଅଭିମାନେ ଭୂଇଁତଳେ
ମଥା ଯାଉଅଛି ଲୋଟି,
କହିଲେ ଓଲଗି, "ଦୋଷ ମୋ ମାମୁ ହେ,
ଯେନା ନାହିଁ କରବଟି ।"
ଯେନା କ ସେ ମାମୁ ନ କରବ ଦୋଷ ?
କୋପେ ତା ଜଳୁଛି ହୃଦ;
ନେତ୍ରୁ ଅଗ୍ନି ବୃଷ୍ଟି ହେଉଛି ସତେ ଲୋ,
ଥରୁଛି ତାକୁରୁ ପାଦ ।
ସେହି ପାଦ ମାମୁ ଠେକ ଭଣଜାରେ
ମାଇଲା ଗୋଇଠା ଘାତେ;
"କ କଲୁ ସ୍ୱଜନ ?" ବୋଲି ଧିକ୍କାର ଲୋ,
ଛି-ଛି କଲେ ବେନ ଥାଟେ ।
ଛି-ଛି କଲେ ତଳେ ପଡ଼ି ଯମ୍ନେଶ୍ୱର,
ତ୍ୟଜ୍ୟା କରିଦେଲେ ପ୍ରାଣ;
"ମାମୁ ହୋଇ, ହେଲ" କହିଲେ କଷ୍ଟେ ଲୋ,
"ଭଣଜାଠାରୁ ନିଉନ ।"
ମାମୁ ହୋଇ, ସତେ ଭଣଜାଠାରୁ ସେ
ନିଉନ ହୋଇଲା ଅତ;

ବାହୁ ବାମ ହେଲେ, ଖଣ୍ଡିତେ ପଶ୍ଚ ଲୋ,
ଏ ବୁଦ୍ଧି ଅଛଇ ଘୋଟି ।

୯

ଘୁମୁସର ଥାଟେ ଥିଲା ସେ ପାଇକ,
ସତୁରି ବରଷ ବୁଢ଼ା;
ଧମ୍ମେଶ୍ୱରଙ୍କର ଜନ ପୁରୁଷ ଲୋ,
ଖଟିଛି ଜୀବନେ ପଶ୍ଚ ।

ହେଲେ, ଶାଲଗଜା ପ୍ରାଏ ସେ ସଲଖେ
ଚାଲଇ ମୁଣ୍ଡାଲ ଟେକ;
ମୁଣ୍ଡୁ ବାଲ ଗୋଟେ ପାଚ ତା ନାହିଁ ଲୋ,
ଦାଉ ଦାଉ ଜଲେ ଆଖି ।

ବଇଶାଖ ମାସ ବତାପି ସମାନେ
ଆସିଲା ପ୍ରତାପେ ମାଡ଼ି;
ଚାଲନ୍ତେ ବାଟ ସେ, ଖଣ୍ଡିଆ ଭୂତ ଲୋ,
ଉଠେ ବେନି ପାଶେ ଉଡ଼ି ।

ମାରି ମନ କରି, ବିଜୁଳି ଝଟକେ
ଖୋଲରୁ କାଢ଼ିଲା ବଲେ,
ଏକ ଖଣ୍ଡାଘାତେ ପଡ଼ିଲା ଛିଡ଼ି ଲୋ,
ବାଣାସୁର ମୁଣ୍ଡ ତଲେ ।

ଅଉ ଥରେ ଖଣ୍ଡା ଉଠାଇ ସେ ନାହିଁ,
ବସିଲା ନସ୍ତୋକ ହୋଇ;

ରାହୁଁ ଝଟେ ନେଇ ମୁଦ, ମଉନେ ଲୋ,
ଢଳେ ପଡ଼ିଗଲା ଶୋଇ ।

ଦୁମୁସର ଆଣ୍ଠ ବାହୁଡ଼ି ବକଲେ
ଗଲେ ଧୁମୁସର ଗଡ଼;
ରୂଳଶି ସହସ୍ର ଆସି ତ ଥିଲେ ଲୋ,
ଫେରନ୍ତି ଦଶ ହଜାର ।

ଅଣିଥିଲେ ରୂଳ ବଡ଼ ବହୁମାନେ
ସାଇଜ ମଉଡ଼ମଣି;
ଦୂର ଦେଶ ଭୂଇଁତଳେ ଶୁଆଇ ଲୋ,
ଫେରିଲେ ସାଇଜେ ପୁଣି ।

ଶବ୍ଦେ ଯୁଗ ଅନ୍ତେ ଧୁମୁସର ଗଡ଼େ
ଆସିଲେ ଭଞ୍ଜ ରାଜନ;
ସେତେ କାଳ ହେତେ, ମୁହିଁ କ ଜାଣେ ଲୋ;
ଗାଦ ପଡ଼ିଥିବ ଶୂନ୍ୟ ।

୧୦

ବାଣାସୁର ବଜା ଜୀବନ୍ତେ ନ ଥିଲା
ଦୁର୍ଦ୍ଦଣ୍ଡ କଭଲା ମର୍ତ୍ତ୍ୟ;
ମର ଏବେ ହେହୁ ପ୍ରେତ ହୋଇଛନ୍ତି ଲୋ,
ଥବନ୍ତି ପରଜା ଶତେ ।

ଗାଆଁ ଗଣ୍ଡା ଛାଡ଼ି, ପଳାଇଲେ ଲୋକେ
ଦୁଇ ପା ଅନ୍ଧାନ୍ତ ଧରି;
ଚଳିକାର ଘାଣ୍ଟ ପଡ଼ି କି ଗଲା ଲୋ,
ବାଟୋଇ ନ ଯାଏ ଡରି ।

ନିଶବଦ ରାତିବେଳେ ହେବେ କାହିଁ
ନିଦରୁ ଉଠଇ କିଏ;
ଶର ପିଇଁ ପିଇଁ, ନଳ ଶବଦ ଲୋ,
ହୂରସ୍ତେ ଶୁଣଇ ଥୟେ ।

ଧର ଝିକି ପିଲା ଅନ୍ଧାର ରାତିରେ
ବାହାର ନ ହୁଏ ମାଆ;
ଗରଭିଣୀ ସ୍ତିରୀ ମୁଦଇ କାନ ଲୋ,
ଶୁଣି ବାଣାସୁର ନାଆଁ ।

ସଞ୍ଜ ହେଲେ, କଳ କବାଟ ଦିଅନ୍ତି
ପରଜା ପାଇକେ ଘରେ;
ସାଥୀ ନ ହୁଅନ୍ତି ମାମୁ ଭଣଜା ଲୋ,
ରକ୍ଷା ଉପୁଜିବା ଡରେ ।

୧୧

ସେହି ଡର ମନେ ରହିଛି ଯାଇଛି,
ବ୍ୟାପି ଏ ଓଡ଼ିଶା ଦେଶ;
ଲକ୍ଷେ ବରଷ କି ନୋହିବ ଏବେ ଲୋ ?
ପ୍ରକଟ ହେଉଛି ହାସ ।
ମାମୁ ପାଖ ଛାଡ଼ି ପଳାଏ ଭଣଜା,
ମେଘ ଘଡ଼ଘଡ଼ି ହେଲେ;
ମାମୁ ଭଣଜା କି ଏକା ନାଆଁକେ ଲୋ,
ବସନ୍ତି ବଢାପି ବେଳେ ?
ବାଢ଼ି ଉପଦ୍ରବ ହୋଇଲେ ଏକା ଘରେ
ନିଷ୍ଟିନ୍ତେ ରହନ୍ତି କାହିଁ ?

ମାମୁର ଅଇଁଠା ଭଣଜା ବୋହୁଥିଲେ,
ଅଦ୍ୟାପି ନ ଦଏ ଛୁଇଁ ।

ବ୍ରତ ଭିକ୍ଷା ଥାଳ ଛୁଏଁ ମାମୁ ଯେବେ,
ଭଣଜା ପଳାଏ ରୁଷି;
ଫେରାଇ ନ ଥିଲେ ବୁଝାଇ ବାହୁଡ଼ିଲେ,
ଘରେ କ ରହନ୍ତା ଆସି ?

ମାମୁ ଝିଅ ସାନ ଭଉଣୀର ହାତ
ଭଣଜା ଧରେ ଦକ୍ଷିଣେ;
ଘୁମୁସରୁ ଯାଇଥିବ ସେ ଢଙ୍ଗ ଚଳି,
ଦକ୍ଷିଣକୁ କାଳକ୍ରମେ :

୧୨

ଶଲ୍କା ପନ୍ତାର ଦେଶ ପାହାଡ଼ ସେ
ବିଶାଳ ବଧୂ ଭୂଆଣ;
ଦେଶ ମଧ୍ୟେ ଏକ ବଡ଼ଚୁଲି ଠିକେ ଚାଲି,
ଦାନୁ ଦାନ ଛୁଟେ ଆନ ।

ଯତ୍ନେଶ୍ୱର ଦେବ ଶାପ ଦେଇଥିଲେ
ଜୀବନ ଛାଡ଼ିଲା ବେଳେ—
"ବଡ଼ ହୋଇ, ମାମୁ ଭଣଜାଠାରୁ ହେ
ନାଶନ ହେଲ ମହାରେ ।"

ସେ ମାମୁ ଭଣଜା କଳି ଯୁଗେ ଏବେ
ଅଛନ୍ତି ପାହାଡ଼ ହୋଇ;

ଶାପ୍ୟ ବଳେ ମାମୁ ଛୁଟୁଛନ୍ତି ନାଡ଼ ଲୋ,
ଭଣଜା ବଢ଼ୁଛନ୍ତି ତହିଁ ।

ଭଣଜାର ଶିଖେ ଠିଅ ହେଲେ, ଦଶେ
ଚିଲିକା ସେପାରି ବଣେ
ନୀଳଚକ୍ର ଦୂରେ ଜାଲୁଜାଲୁଆ ଲୋ,
ପହିଲି କାର୍ତ୍ତିକ ଦିନେ ।

ଧର୍ମ ବଳ ଯାଉ ଯେଡ଼କ ମନ୍ଦିରେ
ନେଣେ ସେ ଦେଖଇ ଏକା;
ମୁଁ ଦିନେ ସେଦିନ ଯାଇ ତ ଥିଲି ଲୋ,
ମୋତେ ନା ପଡ଼ିଲା ଦେଖା ।

ଏକ ପାଖେ ଥାଉ ପଡ଼ିଛନ୍ତି ସଡ଼କ,
ଚଳନ୍ତି ଶ୍ରୀକ୍ଷେତ୍ର ଯାତ୍ରୀ,
ଅନ ପାଖେ ରେଳ ବୋହୁ ଭଗତେ ଲୋ,
ଯାଏ ନୀଳାଚଳେ ନିତି ।

ଚିଲିକାରେ ନାଆ ବସି ଗଲେ ଲୋକେ
ନୀଳାଦ୍ରି ଦର୍ଶନ ପାଇଁ,
ସାତପଡ଼ା, ବୋରକୁଦୁଁ ଦେଖନ୍ତି ଲୋ,
ଭଣଜା ପର୍ବତ ଗୃହୁଁ ।

ଡାକୁଅ ଲାଗି ସେ କନାଶିରି ଯେବେ
ଏ ମଧ୍ୟେ ପାଡୁଛନ୍ତି ପାଣି,
ମାମୁଁ ତ ତେମନ୍ତେ ଭଣଜା ବଳେ ଲୋ,
ହୁଏ ବଳିଆର ଜାଣି ।

ନାଅ ବାହୁ, ଗାଏ ନାଉର ବାଘୁଡ଼ା
ମମୁ ଭଣଜାଙ୍କ ଗୀତ;

ମାମୁ ଭଣଜାରୁ ବୋହଲେ ବାଅ ଲୋ,
ଫୁରୁସତ ପାଏ ହାତ ।

ବୁଢ଼ା ବୁଢ଼ା ଲୋକେ ମରି ତ ଗଲେଣି,
କଥା ଅସିଲାଣି ଲଟ;

ଆଗ ଡର ଭୟ ମନରୁ ଏବେ ଲୋ,
ଭାଜ ଯାଉଅଛି କଟୁ ।

ସିଂହେଶ୍ୱରେ ଲୋକେ ପାହାଡ଼ର ତଳେ
ଅଚନ୍ତ୍ର ବସାଇ ଗାଆଁ;

ସିଂହନାଥେ, ରଖ ଘଣ୍ଟ ଘୋଡ଼ାଛ ହେ,
ପ୍ରଖ୍ୟାତ ହେଉଛି ନାଆଁ ।

ଆଉ ଗାଏଁ ଆଜ ଘୁମୁସର ଅଣି
ରଖିଅଛି ବାଣପୁରେ;

ଦେଶ ଘୁମୁସରପଦର ଅଛି ଲୋ,
ଶଲକାର ପନ୍ତାକୂଳେ ।

ଯେ ପଦରେ ସେବ ଘୁମୁସର ଥାଟେ
ବସାଇଥିଲେ ଘାଉଣି,

ତହୁଁ କେଟଭ ସେଥି ରହି ତ ଗଲେ ଲୋ,
ସ୍ୱଦେଶେ ନ ଫେରି ପୁଣି ।

ଆପଣା ରଜାଙ୍କ ବଡ଼ତ ସେ ନେନେ
ନତ ଦେଖୁଛନ୍ତି ଗୃହିଁ;
ପର୍ବତ ପାଲଟି କେତେ ତାଙ୍କର ଲୋ,
ବଡ଼ପଣ ଛୁଟି ନାହିଁ ।

---

# କଳାପାହାଡ଼

ଓଡ଼ିଶାର ରାଜା ଅପୁତ୍ରକ ମରନ୍ତେ ମୁକୁନ୍ଦ ନାମରେ ଜଣେ କର୍ମଚାରୀ ମୁକୁନ୍ଦଦେବ ଆଖ୍ୟା ଗ୍ରହଣ କରି ରାଜଗାଦିରେ ବସିଲେ । ୧୫୬୮ ମସିହାରେ ସେ ମଧ୍ୟ ଯୁଦ୍ଧରେ ପ୍ରାଣ ହରାଇଲେ । ସେହି ସମୟରୁ ଓଡ଼ିଶା ପରାଧୀନ ହୋଇଛି । ଓଡ଼ିଶାରେ କାହାଳୀ ଯେପରି ତିନି ଖଣ୍ଡ ନଳ ଖଞ୍ଜା ହୋଇ ବଜାଯାଏ, ଅନ୍ୟ କୌଣସିଠାରେ ସେପରି ହୁଏ ନାହିଁ । ପ୍ରବାଦ ଅଛି, ମୁକୁନ୍ଦଦେବ କାହାଳୀକୁ ତିନି ଗଡ଼ କରି କାଟିଦେଇ ଥିବାରୁ, ସେହିଦିନଠାରୁ ଓଡ଼ିଶାରେ ସବୁ କାହାଳୀ ତିନି ଖଣ୍ଡ ନଳରେ ଅଲଗା ଅଲଗା ହୋଇ ଗଢ଼ା ହେଉଅଛି । ସାରଙ୍ଗଗଡ଼ ବୋଧହୁଏ କଟକ ଓ ଚନ୍ଦକା ମଧ୍ୟରେ ଅବସ୍ଥିତ ଥିଲା ।

୧

କେତେ ତୀର୍ଥ, କେତେ ଦେଉଳ ଆମ୍ଭ ଏ
ଓଡ଼ିଶା ସରିକେ ନାହିଁ;
ଜମ୍ବୁଦ୍ୱୀପ ଯାକୁ ଯାତ୍ରୀ ଭଗତେ ଲୋ,
ଆସନ୍ତି ଦର୍ଶନ ପାଇଁ ।

ସେ ଲାଗି ଏଦେଶେ ବୋଲନ୍ତି ପଣ୍ଡିତେ
ପବିତ୍ର ଦେବତା ପୁରୀ;
ନାଆଁ ଯେବେ ତୁଣ୍ଡେ ଧରନ୍ତି, ହାତ ଲୋ,
ଯୋଡ଼ନ୍ତି ଜୁହାର କରି ।

ହେଲେ, କାହିଁ ଯିବ—ନୀଳାଚଳ ଅବା
କୋଣାର୍କ ଭୁବନେଶ୍ୱରୁ;

ଏ ବାହାରେ ଯେତେ ଅଛଇ ପାହ୍ନ୍ତ ଲୋ,
ଦେଉଳ ସାନ କି ବଡ଼ ।

ଦେଖିଥିବ ଦେବା ପ୍ରତିମା କାହ୍ନାନ୍ତୁ
ଛୁଟି ତ ଯାଇଛୁ ଶିରୀ,
କାହା ମୁଣ୍ଡ କାହା ହାତ ପଯୃତ ଲୋ,
ପଡ଼ି ଯାଇଅଛୁ ଛିଡ଼ି ।

ଦେଖି ହାତ ଶିରୀ, ମନଦୁଃଖେ ସିନା
ନିଶ୍ୱାସ ଥିବ ପକାଇ;
ତଥ୍ୟ କାହାରେ କେବେ ପୁଚ୍ଛୁ କି ଅଛ ଲୋ ?
ଶୁଣ, କହୁଅଛୁ ମୁହିଁ ।

୨

ସ୍ମରଣ ବରଷୁ କିଛୁ ଊଣା ହେବ,
ଓଡ଼ିଶା ସ୍ୱାଇତେ ଥିଲେ
ଗଜପତି ଗାଦି ଖାଲି ପଡ଼ିଲା ଲୋ,
କିଏ ରଜା ହେବ ଭଲେ ?

କହିଲେ ପରଜା, "ଗୁଣ ଧର୍ମ ବଡ଼
ମନ୍ତ୍ରୀରେ ସବୁରୁ ଜଣେ,
ବାଛୁ ଆମେ ଏବେ ଆପଣା ଇଚ୍ଛାରୁ,
ବସାଇବା ସିଂହାସନେ ।"

ସତ ଏକା, ରଜା ଏ ମନ୍ତ୍ରୀମଣ୍ଡଳେ
ନବରୁଦ୍ଧ ଯୋଗ୍ୟ ପ୍ରଭୁ,
ପ୍ରଜା ଯେବେ ତାହିଁ ବସାନ୍ତି ତାଙ୍କୁ ଲୋ,
ରଜା ସେ ହୋଇବେ କାହିଁ ?

ଦେଖ, ଜଗନ୍ନାଥ ଜଗତଗୋସାଇଁ
ବସି ନୀଳାଚଳ ପୀଠେ,
ପୂଜା ପାଉଛନ୍ତି; ମଣିଷ ସିନା ଲୋ,
ଗଢ଼ିଛି ଆପଣା ହାତେ ।

ଆଜ ଯେତେ ଯହିଁ ଦେବତା ମହୀରେ
ମଣିଷଗଢ଼ା ସକଳେ;
ରଜା ହୋଇଗଲେ ବଡ଼ କି ଦଉଁ ଲୋ,
ଗାଦିରେ ବସିବେ ବଳେ ?

୩

ଓଡ଼ିଶା ରାଇଜ ରତ୍ନ ସିଂହାସନେ
ହେଲେ ଗଜପତି ବିଜେ;
ଗୁଣ ଧର୍ମେ ବଡ଼ ବାଛି, ପରଜା ଲୋ,
ଥାପି ତ ଅଛନ୍ତି ନିଜେ ।

ବୀରପଣେ, ଦୁଷ୍ଟ ବଇରଗଞ୍ଜଣେ
ସଂସାରେ କେ ହେବ ସରି ?
ଶୁଣି କାନେ ନାଆଁ—'ମୁକୁନ୍ଦଦେବ' ଲୋ,
ରିପୁଏ ଉଠନ୍ତି ଥରି ।

ଘୋଷନ୍ତି ପରଜା, "ଏ ସରି ସମାନେ
ରଜା କେ ଏ ମର୍ତ୍ତ୍ୟେ ଆଜ ?
ସୁବର୍ଣ୍ଣ ଗାଦିରେ ଚିରଞ୍ଜୀବ କରି
ଭଲେ ରଖିଥାନ୍ତୁ ପ୍ରଭୁ ।"

୪

ହେଲେ, ରାମଚନ୍ଦ୍ର ଲୋଚିଥା ସାଅନ୍ତ
ବସି ତା ଶାରଙ୍ଗଗଡ଼େ,
ତାଙ୍କ ପାତ୍ର ମନ୍ତ୍ରୀ, ଏକାନ୍ତ ଥାନେ ଲୋ,
ବୁଝାଇ କହୁଛନ୍ତି ଧିରେ—

"ମୁକୁନ୍ଦଦେବ ଏ ରଜା ହେବ ରାଜ୍ୟେ,
କେମନ୍ତ ସହିବ ଦେଶ;
ଶାରଙ୍ଗଗଡ଼ର ନୃପ ସିନା ଅଜ
ବୁଡ଼ାଇ ବସିବେ ଶେଷ।

ତୁମେ ପାତ୍ର ମନ୍ତ୍ରୀ ହୋଇ, ହେବ ସିନା
ଦାଣ୍ଡ ଭିକାରିରୁ ହୀନ,
ଅନ୍ୟାୟ ସହିବେ ଏଉଜା ପାଇବେ
ନ ବଞ୍ଚି ପାରିବେ ଜାଣ।

ଗୁଣ ଧର୍ମେ ବଡ଼ ବାଛୁବାକୁ ମଧ୍ୟେ
ସେ ଏକା ଥିଲା କି ଜଣେ ?
ଅନ୍ଧ ସିନା ଲୋକେ, ବଦବେକା ତୁମେ ତ,
ବୁଝି କି ନ ପାର ମନେ ?"

"ସତ, ଏ ମଣିମା", ଶୁଣି ପାତ୍ର ମନ୍ତ୍ରୀ
କହିଲେ ରାଜନେ ସୁହିଁ;
ତୁଣ୍ଡ କଥା ଗଲା ମିଶି ପବନେ ଲୋ,
ମଣିଷ୍ୟ କେ ଶୁଣିଲା ନାହିଁ।

୫

ବଙ୍ଗ ଦେଶ ସେବ ପଠାଣ ପାଇକ
ମଝେ ବଳିଆର ଅତି;
ଏକା ଦଶ ଜଣେ ହାତୀଏଁ ଲଢ଼ି ଲୋ,
ଲୁହା କି କରନ୍ତି ଘାତ ।

ହେଲେ, ପରଜାଙ୍କୁ ଗଞ୍ଜଇ ବଟଶଟେ,
ନିଅଇ ରକତ ଶୋଷି;
ଖଜଣା ମୁଠାକ ନ ପାଇଥିଲେ ଲୋ,
ଟିକେ ଝାଙ୍ଗି ଦିଏ ଫାଶି ।

ଘର୍ ଛାଡ଼ି ଲୋକେ ପଳାନ୍ତି ବନସ୍ତେ,
ଡାକ 'ହାହି-ହାହି' ଉଠେ;
ଅରକ୍ଷିତ ହୋଇ, ସ୍ତ୍ରିସ ବାଳୁତେ ଲୋ,
କାନ୍ଦ ଲୋଟୁଥାନ୍ତି ତଳେ ।

ଶୁଣିଲେ ମୁକୁନ୍ଦଦେବ ଗଜପତି;
କହିଲେ ଥାଟେ ହକାରି,
"ଶୁଳ ସେ ପାଦିସ୍ତେ ଉଠାଇ ଗାଦିରୁ
ପରଜା ଆସିବା ଛାଡ଼ି ।"

୬

ଜିଣି ଯୁଦ୍ଧେ, ତାର ବଙ୍ଗ ରାଜ୍ୟ ପ୍ରଜା,
ହସି ଗଜପତି ବଳେ;
ପାଦେ ମଥା ନୋଇଁ, ବଙ୍ଗ ପାଇକ ଲୋ,
କଲା ପ୍ରଣିପାତ ନିଜେ ।

ଗଲାବେଳେ ଗଡ଼ୁଁ "କି ଆଣିବି ବୋଉ ?"
ମାଆଙ୍କୁ ଥିଲେ ପଚାରି;
ମାଆ କହିଥିଲେ, "ଗଙ୍ଗାଙ୍କୁ, ବାବୁ ରେ,
ପାରିଲେ ଆଣିବୁ ଲୋଡ଼ି ।"

ସେଥିଲାଗି ରାଜନ ନ ଲେଉଟି, ତପେ
ବସିଲେ ଗଙ୍ଗାଙ୍କ କୂଳେ;
କହିଲେ, "ଧ୍ୟାନ ଯେ ଭାଙ୍ଗିବ, କରିବ
କାଟି ତନୁ ଗଡ଼ ତାରେ ।"

ଲକ୍ଷେ-ଥର କଲେ ଗଙ୍ଗାଷ୍ଟକ ଜପ,
ଗଙ୍ଗା ତ ହେବେ ପ୍ରସନ୍ନ;
ଯହିଁ ନୃପ ନେବେ, ଯିବେ ସେଠାବେ ଲୋ,
ଏଥକୁ ନ ମଣ ଆନ ।

୭

ମନତୋଷେ ଗଜପତି ଦିନରାତି
ଧ୍ୟାନେ କାଟୁଛନ୍ତି ବସି;
ପାତ୍ର ମନ୍ତ୍ରୀ ଆଛେ ଜଗନ୍ତି ପାଖେ ଲୋ,
ମାଛି ନ ପାରଇ ପଶି ।

ଆଜି ଗଙ୍ଗାକୂଳେ ରହିଛି ସେକାଳ
ମୁକୁନ୍ଦଦେବଙ୍କ ଘାଟ;
ବରଷକେ ଥରେ ତ୍ରିବେଣୀ ବୁଡ଼ ଲୋ,
ପକାନ୍ତି ଯାତ୍ରୀ ଭଗତ ।

ଏକା ବୁଢ଼େ ଘଢ଼େ ଗୋହତ୍ୟା, ଦ ବୁଢ଼େ
ବ୍ୟଭିଚାର ଯାଏ ନାଶ;
ତିନ ବୁଢ଼ ଯେହ୍ନୁ ପକାଏ ତାର ଲୋ,
ମରେ ଦେବଲୋକେ ବାସ ।

୮

ଦଖିଲା ଶାରଙ୍ଗଗଡ଼ ନୃପ ଏଣେ,
ଖାଲି ଗଜପତି ଗାଦି;
ଗଜପତି ଯାଇ ଦୂର ପ୍ରବାସେ ଲୋ,
ବସିଛନ୍ତି ମନ୍ତ୍ର ସାଧି ।

ହେଲେ, ଚିନ୍ତ ନାହିଁ ପଡ଼ାଇଲା ତଳେ
ବସିବ ଗାଦି ସେ ମାଡ଼ି;
ଗଜପତି ଫେରି ଅଇଲେ, ମୁଣ୍ଡ ଲୋ,
ଦେବକୁ ପିନା ଯିବ ଛାଡ଼ି ।

ଥିଲା ବଙ୍ଗ ଦେଶ ପଠାଣ ପାଇଛି-
ପାଖେ ବଳବନ୍ତ ବୀର;
ଦଶ ଶହ କୋଶ ଘଇଜେ ନାଆଁ ଲୋ,
ପ୍ରଖ୍ୟାତ 'କଳାପାହାଡ଼'

ବ୍ରାହ୍ମଣ କୁଳେ ସେ ଜନ୍ମ ହୋଇ, କଳି
ମଝେ କୁଳାଙ୍ଗାର ପଣ,—
ପଠାଣ ଦୁଲାଲୀ ଦେଖି ତା ହାତ ଲୋ,
ଧରିବାକୁ କଲା ମନ ।

ନିଜ କୁଳଧର୍ମ ଛାଡ଼ି ତହୁଁ ହେଲେ,
ପଠାଣ ଧୂଅ ସେ ଟିକେ;
ବାଟୁଳି ନ ବାଜେ, ଅଛିଦ୍ର କଥା ଲୋ,
କହୁ ଶୁଳିଯାଏ ବାଟଙ୍କେ।
ରାଇ ରାମଚନ୍ଦ୍ର ପଠାଇଲା ତାକୁ,
ହସି ସେ ଆସିଲା ମାଡ଼ି;
ଛପି ଶ୍ୱେତ ବାଟେ, ଶିଖି ମନାଇ ଲୋ,
ଆଣିଲେ ଏକାନ୍ତେ ଶୁଳି।
ନ ଜାଣିଲେ ଗଜପତି ଗଙ୍ଗାକୂଳେ,
ଜାଣିଲେ ନାହିଁ ତ ଥାଟେ;
ଦେଶ ଲୋକେ ହତେ ଅନ୍ଧ କି ହେଲେ ଲୋ,
ଦେଖି ଛାଡ଼ଦେଲେ ବାଟେ।

୯

ଆସି ଏଥି, କଳାପାହାଡ଼ ମୃତ୍ତିକା
ମୁଣ୍ଡେ ଲଗାଇଲା ନେଇ;
ଏ ପର ବନସ୍ଥ କିଲ ଦଉଡ଼ିଆ ଲୋ,
ମର୍ତ୍ତ୍ୟେ ଦେଖିଥିଲା କାହିଁ ?
ଲକ୍ଷ୍ମୀ ଦେବୀଙ୍କର ଧାଠ ବଗିଚୁ ଏ,
ପୂରି ଘନ ଫୁଲ ଫଳେ;
ଥରେ ଦେଖିଥିଲେ, ନ ଯିବ ମନୁ ଲୋ,
ପାଦ ଦେବ, ଭାଗ୍ୟେ ଥିଲେ।
ଦେଇ ପାଦ, କଳାପାହାଡ଼ କହିଲା,
"କି ଭାଗ୍ୟେ ଆସିଛି ଏଥି;

ମାଡ଼ ଭୂଇଁ ଖଣ୍ଡେ ବସିଲେ ଏ ଦେଶେ,
ରାଜ୍ୟ ମୋ ନ ଫେରିବ ଟି ।"

୧୦

ବାରବାଟୀ ଗଡ଼େ ଥିଲେ ତ ନିଶ୍ଚିନ୍ତେ
ଗଜପତି ପାଟରାଣୀ;
ଗଡ଼ ଜିଣିବାକୁ ଗଲା ସେ ଠାଣେ ଲୋ,
ପରଜା ପାଇକ ହାଣି ।
ହେଲେ ତିନି ଦିନ ଲଢ଼ି ହଟିଗଲା,
ଲାଜେ ତା ଛୁଡ଼ିଲା ମଥା;
ଏଡ଼େ ବଡ଼ ଖେଳି ମାଇପି ହାତେଁ ଲୋ,
ମାଡ଼ କି ଖାଇବା କଥା ?
ସେଷ ଅଭିମାନେ ଗରଜି କହିଲା,
"ଆଜି ପଛେ ନୋହୁ କିଛୁ;
ଭାଙ୍ଗି ଏ ମୂଲକ ଚୂର ଯିବ ହାତେ,
ମଙ୍କେ ଥିଲାଯାଏ ବଞ୍ଚି ।"

୧୧

ଗାଆଁରୁ ଗାଆଁକୁ ଓଡ଼ିଶା ରାଇଜେ
ବୁଲୁଛି କଳାପାହାଡ଼;
ପଛେ ଛନ୍ତି ଲକ୍ଷେ ପଠାଣ ଆଠ ଲୋ,
ଜଣୁ ଜଣେ ବଳିଆର ।
ଦେଖି ରାମଚନ୍ଦ୍ର ହସି ଭାଳେ ମନେ—
"ଏ ସବୁ ପିହଲ ଥିଲେ,
କେବେ ନୃପ ମାଡ଼ି ଗଜପତି ଗାଦି
ଆଜି ନ ବସନ୍ତେ ଭଲେ ।

ଜଣି ଦେଶ ଯେବେ ଫେରିବ ପଠାଣ,
ମୁଁ ହେବ ବଡ଼ ପାଇକ;
ଗଜପତି ହୋଇ ବସିବ ଗାଦିରେ
କରିବ ଯା ହେବ ଇଚ୍ଛା ।”

୧୨

ହେଲେ, ନାହିଁ ମନ କଳାପାହାଡ଼ର
ଦେଶ ଜଣିମାରେ ତିଳେ;
ଫିଟି ହାତେ ପାଇ ପ୍ରାଭବ, ହାଅ ଲୋ,
ଜଳଇ କ୍ରୋଧ-ଅନଳେ ।

ଯହିଁ ଯାଏ ପଶେ ଦେଉଳେ, ଅକୋଶେ
ଭାଙ୍ଗଇ ପ୍ରତିମା ପିଣ୍ଡି;
ହାତ ମୁଣ୍ଡ ପାଦ ଛିଡ଼ କାଯ୍ୟାରୁ ଲୋ,
ଯାଏ ଭୂଇଁ ତଳେ ଲୋଟି ।

କର ବାପେ ବଡ଼ବାପେ ତା ଜୁହାର,
ମଥା ଯାଇଥିବ ଛିଡ଼;
ପୂଅ ଏବେ ପାର, ଉପାଡେ ଅଛି ଲୋ,
ପିଣ୍ଡିରୁ ମୂଳ ବାଡ଼ ।

ଗଲା ଯାଜପୁର ବିରଜା ଦେଉଳେ,
ଝଙ୍କଡ଼ ମଙ୍ଗଳା ପୀଠେ,
ଭଗବତୀ, ଚଣ୍ଡୀ, ଭୁବନେଶ୍ୱର ଲୋ,
କୋଣାର୍କେ ପଶିଲା ବାଟେ ।

ଅଭ ଛୋଟ ସାନ ଦେଉଳ ଭାଙ୍ଗିଲା,
ଗଣି କି ପାରିବ ମୁହିଁ ?

ବସ୍ତ୍ରାକେ କହୁଅଛୁ, ନାହିଁ ତ ଯୀଠ ଲୋ,
ଯହିଁ ସେ ନ ଥିଲା ଯାଇ ।
ହେଲେ, ଯେବେ ଶେଷେ ଗଲା ନୀଳାଚଳେ,
ଦେଉଳ ଦେଖିଲା ଖାଲି;
ପଣ୍ଡା ପଡ଼ିଆରେ ଜଗନ୍ନାଥଙ୍କୁ ଲୋ,
ଛକ ନେଇଥିଲେ ଗୁଳି ।
ଅନ୍ଧ ସନ୍ଧ ଖୋଜି, ପାଇ ପାରିକୁଦେ,
ଅନଳେ ଫିଙ୍ଗିଲା ବଳେ;
ଜଗନ୍ନାଥେ ନାହିଁ ପୋଡ଼ନ୍ତି ମନେ ଲୋ,
ହେଷା ଉପୁଜିଲା ଫଳେ ।

୧୩

ଏତେକ ତା କଥା ଶୁଣି, ବଙ୍ଗ ଦେଶେ
ବାହୁଡ଼ ଦଣ୍ଡକ ପାଇଁ;
କ କରୁଅଛନ୍ତି ତ୍ରିବେଣୀ ଘାଟେ ଲୋ,
ଓଡ଼ିଶା ରାଇଜସାଇଁ ?
ଶହେ ଆଠ ଦନୁ ଏକ ଊଣା ବସି
ଧ୍ୟାନେ ଗଙ୍ଗାକୂଳେ ନକ,
ଲକ୍ଷେ ମନ୍ତ୍ର ଜପ ସାରିବା ପାଇଁ ଲୋ,
ଛ କୋଡ଼ି ଅଛୁ ଟି ବାକି ।
ଆସି ଦୂତ ଧାଇଁ, ରାଇଜ ଅଶୁଭ
କଥା ଜଣାଇଲା ଏହି—
"ଦେଉଳ ମଣ୍ଡପ କଳାପାହାଡ଼ ତ
ଗଲା ଦେଶ ସାରି ଚୂରି ।"

ପୁଣି ପାତ୍ର ମନ୍ତ୍ରୀ ତାଡ଼ିଗଲେ ସେପେ,
ହେଲେ ଅଗ୍ନିଶର୍ମା ଥାଟେ;
ନିଜ ଦେଶ ଦୁଖ ମଜନେ କେବେ ଲୋ,
ଶୁଣିଛୁ ଓଡ଼ିଆ ସତେ ?

କହିଲେ, "ତପସ୍ୟା ଗଜପତିଙ୍କର
ଭାଙ୍ଗିବାକୁ ହେଲା ଏବେ;
ଧ୍ୟାନ ପଛେ ସିଦ୍ଧ ନୋହୁ, ପରଜା କି
ଦେଶେ ନାଶ ଯିବେ କେବେ ?"

ଡକାଇ ଆଣିଲେ କାହାଳିଆ ଝଟେ,
କହିଲେ, "ବଜାଅ ଝାଣେ,"
ଯୁଦ୍ଧେ ହେଲେ ମୁଣ୍ଡ ଦେବ, କପାଇଁ ଲୋ,
ଅଲଭ୍ୟ ମରିବ ବଣେ ?

ଫୁଙ୍କି ଢଙ୍ଗେ ତୁଣ୍ଡେ କାହାଳୀ ପଟ ତା,
ଉଭା କାହାଳିଆ ମଣ୍ଡି;
ନଈକୂଳ ଘାଟ ଶୂନ୍ୟ କମ୍ପାଇ ଲୋ,
ଟେକିଲା ସ୍ୱର ଗରଜି—

"ଦେଶ ରକ୍ଷା କାନେ ଶୁଣ, ନରମଣି,
ଆଇଲା କଳାପାହାଡ଼;
କେଡ଼େ ଝାଣ ବାହା, ବାରବାଟୀ ଗଡ଼ୁ
ଭାଙ୍ଗିଲା ଲୁହାର ବାଡ଼ ।

ଘଡ଼ିକେ ଥାଟେ ତା ଶୋଷିଦେଲେ ତୁଣ୍ଡେ
ସାରା ମହାନଦୀ ପାଣି,

ସୁବର୍ଣ୍ଣ ଥାଳରେ ଖେଚ଼ୁଡ଼ା ପରଷିଲେ
ମୁକୁନ୍ଦଦେବଙ୍କ ରାଣୀ ।”

୧୪

ଭାଙ୍ଗି ଧ୍ୟାନ, ଗଜପତି ଗୁହାଁ ଥରେ,
ପୁଣି ନେତ୍ର ଦେଲେ ବୁଜି;
ଆଉ ଥରେ ତହୁଁ ସେ କାହାଳିଆ ଲୋ,
ଚଳେ ବଜାଇଲା ଗର୍ଜି ।

ଶୁଣି ଆଜ୍ଞା କଲେ, “କି କହୁ କାହାଳି,
କହ ଆଉ ଥରେ ଦେଖି,”
କାହାଳିଆ ପୁଣି ତିନି ଥରକୁ ଲୋ,
ସ୍ୱର ବଢ଼ାଇଲା ଟେକି ।

ଉଠିଲେ ଗରଜି ତପୁଁ ଗଜପତି,
କହିଲେ “ଦିଅ ମୋ ଖଣ୍ଡା”;
ଖଣ୍ଡା ଆଣି ହାତେ ତିନି ପଟରୁ ଲୋ,
ପହଞ୍ଚିଲେ ତିନି ଭେଣ୍ଡା ।

“କଳାପାହାଡ଼କୁ ହାଣିମା ଆଗୁ ଏ
କାଟିବି କାହାଳି, ତୋର”;
ପଣ କରି, ନୃପ ଭାଙ୍ଗି କି ଦେବେ ଲୋ ?
କାଟି, କଲେ ତିନି ଗଡ଼ ।

ସେହିଦିନୁ ଏହି ଓଡ଼ିଶା ରାଇଜେ
ହିଖଣ୍ଡି କାହାଳୀ ଏକା;
ଯୋଡ଼ ହାତେ; ଫୁଙ୍କି କାହାଳିଆ ଟି ଲୋ,
ବଜାଇ, ନଗ୍ରେ ଏ ଠେକା ।

୧୫

ଏକ ଲକ୍ଷ ଜପ ନ ପୂରିଲା ବୋଲି
ସିଦ୍ଧ ଯେ ନୋହିଲା ଧ୍ୟାନ;
ଓଡ଼ିଶା ରାଇଜେ ଆସିବା ପାଇଁ ଲୋ,
ଗଙ୍ଗା ନ ମଙ୍ଗିଲେ ଜାଣ ।

ହେଲେ, ମହାଦେବେ ନ୍ୟାୟବନ୍ତ ପଣେ
ବେଗେ ଜଟା ଦେଲେ ମେଲି;
"ଗଜପତି ଭୁଲେ", କଲେ ଅନୁଜ୍ଞା ଲୋ.
"ଲଉଟ ଏବେ ଯାଅ ଘୂରି ।"

ଲଉଟି ଗଜପତି ଭୁଲେ ତହୁଁ ଗଙ୍ଗା
ଅଇଲେ ଓଡ଼ିଶା ଦେଶେ;
ବାଟେ ଘାଟେ ଲୋକେ ଦେଖିଲେ ନାହିଁ ଲୋ,
ତଥ୍ୟ ଜାଣିଗଲେ ଶେଷେ ।

ଆଜି ଗଙ୍ଗା ଏବେ ବୋହୁଛନ୍ତି ପରା
ଛପି ମହାନଦୀ ସୁଏ;
କଳିଯୁଗ ଗଙ୍ଗା ଚହ୍ନୋପୂଳାକୁ ଲୋ,
କିଏ ନ ଚାହିଁଇ ଥରେ ?

ମିଛେ ସିନା ଲୋକେ ଗଙ୍ଗାସ୍ନାନ ଲାଗି
ଯାଆନ୍ତି ମାସକ ବାଟ;
ମହାନଦୀ ଘାଟେ ବୁଡ଼ ପକାଇ ଲୋ,
ଶୁଦ୍ଧ କା ନୋହନ୍ତି ଘଟ ?

୧୬

ଛାଡ଼ ଏ ଗାଥା ମୁଁ ଗାଇ କେତେ ଆଉ
 ନେବି ଖାଲିଠାରେ ଦିନ ?
ଗଜପତି ଶୁଣି ବାଦଶାହୀ ବାଜା ଲୋ,
 କି କଲେ, କହୁଛି ଶୁଣ ।

ଖୁଲି ସେନା ସଙ୍ଗେ ଅଇଲେ ସାଇଜେ;
 ଶୁଣିଲା କଳାପାହାଡ଼,
ଆତଙ୍କେ ଲୁଚିଲା ବନଗୁହ୍ମେ ଯାଇ ଲୋ,
 ଆଗେ ହେଲେ ଥରହର ।

ତେବେ, ସେହି ଆଗେ ରାମଚନ୍ଦ୍ର ହାତେ
 ସମର୍ପି ଗଲା ସେ ଦେଇ;
ଗଡ଼େ ରାମଚନ୍ଦ୍ର ହୁଏ ତିଆର ଲୋ,
 ଅଗୋଚେ ଲଢ଼ିବା ପାଇଁ ।

ଜଗି ଗଡ଼େ ତାଙ୍କୁ, ଗର୍ଜି ଗଜପତି
 କହିଲେ, "ଦେଖିବି ଠାଣ;
ଅଲଭ୍ୟେ ସାଇଜେ ଲୋଡ଼ି ଆଣି ରିପୁ,
 ଲଗାଇଛି ଏ ଭିଆଣ ।"

ଓଡ଼ିଆ ସଇନେ ଧରି ଧନୁ ଶର,
 ଘୋଟିଲେ ଶାରଙ୍ଗଗଡ଼;
ଲୁଚି ରାମଚନ୍ଦ୍ର ନ ରହି ପାରି ଲୋ,
 ହେଲା ଯୁଦ୍ଧେ ଆଗଭର ।

ହେଲେ, ଦିନ ଦୁଇ ଯୁଦ୍ଧେ ଠାଣ ତାର
 ଖସି, ପଡ଼ିଗଲା ଶନ୍ଧା;

ପଶି ଗଡ଼େ ପୁଣି ତିନି ଦିନକୁ ନେଲେ,
ଲୁଚିଲେ ଦଇନେ ସିନା ।

ଗଡ଼ ପଦା ନଈ ବଣ ଖୋଜି ଗଲେ
ପଠାଣ ରକତେ ବୁଡ଼ି;
ପଠାଣେ ପଠାଣେ, ବହୁ ଘଣ୍ଟା ଚଲି,
ହଣାହଣି ହେଲେ ଝୁଡ଼ି ।

୧୭

ଫେରି, ଗଜପତି ବାରବାଟୀ ଗଡ଼େ
ନିଶ୍ଚିନ୍ତେ ରହନ୍ତେ ଆସି;
କୁଶଳେ ପରଜା ଥାଆନ୍ତେ ପାଳି ନେଲେ,
ରତ୍ନସିଂହାସନେ ବସି ।

କହିଲେ ସେ ରାମଚନ୍ଦ୍ର ଗଡ଼େ ତାର
"ନ ହେବ ମୁକୁନ୍ଦ ରଜା,
ନୋହିଲେ, ଏ ରାଜ୍ୟୁ ପଳାଇବି ସିନା,
ପ୍ରାଣ କରିଦେବି ତ୍ୟଜ୍ୟା ।

ମିଛେ ନରସିଂହ ରଘୁରାମ ବେନି
ନୃପ ମୁଁ ନାହିଁଛୁ ମାରି,
ଏବେ ଯେବେ ଗାଦି ନ ପାଇପାରିଲି,
କି ଲାଭ ଜୀବନ ଧରି ?

ଯାଇ ବେଗେ ପାଖଲଗା ଜଣେ, କାନେ
ମନ୍ତ୍ର ସେ ଫୁଙ୍କିଲା ଧିରେ—
"ଦେଖ, ଏ ମୁକୁନ୍ଦ ଯୁଦ୍ଧେ ତ ନ ମଲା,
ଅମର ହେଲା ମନ୍ତ୍ରରେ ।

ତୁହିଁ ସଜ ଭଣ୍ଡି ପଛୁ ଛୁ ମାରିବୁ,
ଗୋଟିକେ କାଟିବୁ ମଥା;
ନେଇ ଆଣି ଥୋଇ ପାରିଲେ, ପାଇବୁ
ମନ ଅନୁସାରେ ଯଥା ।''

ଯଥା ଲୋଭେ ଧାଙ୍ଗି ଝୁଙ୍ଗାଲୋ ମୁଣ୍ଡ
ଧଇଲା କଟାର ପଟ;
ଗଜପତି ବେକ କାଟିବ ବୋଲି ଲୋ,
କଲିଜା କରୁଛି ଅଣ୍ଟ ।

୧୮

ଲୋଡ଼ି ରାମଚନ୍ଦ୍ର ଆଣିଛି ବନସ୍ତୁ
ଶିଖାଇ କଳା ଯାହାଡ଼େ;
ମିଶି ଦହେଁ ଛକି ଗଜପତିଙ୍କି ଲୋ,
ଦେଖିଲେ ରାତ ଅନ୍ଧାରେ ।

ଦେଖିଲେ, ଗଜପତି ଜାଣିଲେ ପ୍ରତାପେ;
ଗଡ଼େ ଯାଇଥାନ୍ତେ ଫେରି,
ସେହୁ ଫାଙ୍କଲଗା ଧାଡ଼ିକୁ ଦେଲା ଲୋ,
ଆଖି ରାମଚନ୍ଦ୍ର ମାରି ।

ପିନ୍ଧି ଗଜପତି ହାଟଲୋକ ସଜ,
ଗୋଟିଲେ ସେ ନ ହେଲା ଚିହ୍ନି;
ଥାନ୍ତୁଁ ଆଗଭିତ ହୋଇ ଗୁଳଇ ଲୋ,
କାହିଁକି, କେ ଥିଲା ଜାଣି ?

ତେବେ, ହାତ ଭାର ଜୁଟିଲା ତ ନାହିଁ;
ଥରେ ରାମଚନ୍ଦ୍ର ଦେଖି,

ହସି ଗଜପତି ପାଶେ ଅଇଲା ଲୋ,
କଠାରି ଲଗୁଇ ରଖି ।
ଭଣ୍ଡି ସଜ ଧକ୍କୁ ମାଇଲା ପାହାର,
ଛିଣ୍ଡ଼ ଗଜପତି ମଥା
ପଡ଼ିଗଲା ତଳେ; ତେବେ, ଗର୍ଜନେ ଲୋ,
କମ୍ପାଇ କହିଲା କଥା—
"ଆଜ ଏହି ଠାରେ ଜନମଭୂଇଁର
ବୁଡ଼ିଲା ବଡ଼ମାପଣ;
ଆଉ ଗଜପତି ଏ ଦେଶ ଗାଦିରେ
ବସିବେ ନାହିଁଟି ଜାଣ ।"

୧୯

ଆଉ କସ ଅବା କହିଥାନ୍ତା ମୁଣ୍ଡ,
ପ୍ରାଣ ଛୁଟେ ଗଲା ଉଡ଼ି;
ଦିନ ଆଠ ଘଡ଼ି ସୂର୍ଯ୍ୟ ଗଗନୁଁ ଲୋ,
ଗଲେ ଭାଗ୍ୟଦୋଷେ ବୁଡ଼ି ।
ସେ ଦିନୁ ନାହାନ୍ତି ଏ ଦେଶ ଗାଦିରେ
ବସି ଆଉ ଗଜପତି;
ଶତ୍ରୁଯୁଦ୍ଧେ ଖଣ୍ଡା ଫୋପାଡ଼ିଦେଇ ଲୋ,
ଧରନ୍ତି ଲଙ୍ଗଳ କଣ୍ଟି ।
ଦଶହରା ପର୍ବେ ବରଷକେ ଦିନେ
ଧେନି ହାତେ ହତିଆର,
ଅଭ୍ୟାସୁଁ ଖେଳନ୍ତି; ପୂର୍ବ ବୈଭବ ଲୋ,
ସାମାନ୍ୟ ନାହିଁଟି କାର ।

୨୦

ଘୋଡ଼, ଏ କଥା ମୁଁ କହୁଛି, ଅଖିରୁ
ଲୁହ ପିନା ଯିବ ଗଡ଼ି;
କଳାପାହାଡ଼ର ଚରିତ୍ର ଠିକେ ଲୋ,
ଶୁଣ, ଶ୍ଲୋକେ ଦେବ ସାରି ।
ଗଜପତି ତନୟ ମୁକୁନ୍ଦଙ୍କୁ, ପଠାଣ
ଧରି ରାମଚନ୍ଦ୍ରେ ବଳେ,
ରଖି ବନ୍ଦଶାଳେ, ପାଞ୍ଚିଲା ମନେ ଲୋ,
ଆପେ ବସିବାକୁ ଗଡ଼େ ।
ହେଲେ, ବାରବାଟୀ ଜିଣି ନ ପାରିଲା,
ରାଣୀ ରଖିଥିଲେ ଜଗି;
ଶୁଣ୍ଢ଼ ମୁଣ୍ଡ ଶେଷ ସରମେ ଗଲା ଲୋ,
ହାଡ଼ି ଲେଉଟିଲା ରାତି ।
କହିଲା, "ଏ ଦେଶେ ପାଦ ପକାଇଲି
ପାତକ ହେଲା ମୋ ଥାଣ;
ଯାଇ ତୀର୍ଥେ ଏବେ ନାହିଁ ଛଡ଼ାଇଲେ,
ମର୍ତ୍ତ୍ୟେ ନର୍କଗତି ଜାଣ ।"
ପୋତି ମଥା, ହେଲା ଜମ୍ବୁଦ୍ୱୀପ ପାରି,
ପତ୍ତା ନ ମିଳିଲା କାହିଁ;
ମରି କେଉଁ ଠାବେ ଥିବ, କେ ଜାଣେ ଲୋ ?
ସ୍ୱର୍ଗେ କେ ଦେଖିନ୍ତି ନାହିଁ ।

୨୧

ବନ୍ଦଶାଳୁଁ ଫିଟି, ରତ୍ନସିଂହାସନେ
ବସି ରାମଚନ୍ଦ୍ର ଦେବେ,
ଗଜପତି ନାଆଁ ଧରି ବ୍ୟର୍ଥେ ଲୋ,
ଠକି ଭଣ୍ଡିଗଲା ଲୋକେ ।
ବିଦେଶୀ ପଠାଣ ରଜାକୁ ଖଜଣା
ନିୟମ ପ୍ରମାଣେ ଦେଇ,
ଗଜପତି ମଞ୍ଚେ ବୋଲାଇବାର ଲୋ,
କହ ଶୁଣାଥିଲା କାହିଁ ?
ସବୁ ସିନା ଏବେ ହୋଇଅଛି ଲୋପ୍ୟ,
ରହିଛି ଦେଉଳମାନ;
କେତେ ଭଙ୍ଗାରୁଜା ପ୍ରତିମା ତହିଁ ଲୋ,
ବସି, ଦହୁଛନ୍ତି ମନ ।
ଅଦ୍ୟାପି ଏ ଦେଶେ ଘୋଷୁଛନ୍ତି ଲୋକେ—
"ଅଇଲା କଳାପାହାଡ଼;
କେଡ଼େ ଠାଣ ବାନ୍ଧା, ବାରବାଟୀ ଗଡ଼ୁଁ
ଭାଙ୍ଗିଲା ଲୁହାର ବାଡ଼ ।
ଘଡ଼କେ ଆଟେ ତା ଦେଲେ ଟି ଶୁଖାଇ
ପିଇ ମହାନଦୀ ପାଣି;
ସୁବର୍ଣ୍ଣ ଥାଳରେ ହେଡ଼ା ପରଶିଲେ
ମୁକୁନ୍ଦ ଦେବଙ୍କ ରାଣୀ ।"

---

# ସାକ୍ଷିଗୋପାଳ

ଆଗେ ଛାଲକାଳ ଆଯୁଜନ ଅନ୍ଧାର ବଡ଼ ଥିଲା । କ୍ରମେ ନଷ୍ଟପଟୁ, ପଶୁ ବଳ ଅଦରେ ପୋକ୍ତ ହୋଇ ଯାଉଅଛୁ । ଦୁଇ ତିନ ହଜାର ବର୍ଷ ଆଗେ ଏହାର ସୀମା ବିଶ୍ୱନାଥ ମୁଣ୍ଡିଆ ପାଏ ଥାଇପାରେ । ବୀର-ନରସିଂହପୁର ବ୍ରାହ୍ମଣ ଗ୍ରାମର ପୂର୍ବ ମହତ୍ତ୍ୱ ଏବେ ଆଉ ନାହିଁ । ବ୍ରହ୍ମଗିରି ଘଟିରୁ ସତ୍ୟବାଦୀ ବିଦ୍ୟାଳୟ ସୀମାକୁ ଲାଗିଛି । କନ୍ଦଳବାଇ ଗ୍ରାମ ଓ ଭାସ୍ୱଦେଉ ପୀଠ ଭୁବନେଶ୍ୱରର ରେଲଷ୍ଟେସନର ଦୁଇ ପାର୍ଶ୍ୱ, ଅଳ୍ପ ଦୂରରେ ।

୧

କଳି ଯୁଗ ଏବେ ହୋଇଅଛି ପଶି,
ପୃଥ୍ୱୀକି ଘୋଟିଛି ପାପ;
ପ୍ରିୟଠେ ଗିରସ୍ତ ପାଏ ପ୍ରାଭବ ଲୋ,
ପୁଅ ହାତେ ବୁଢ଼ା ବାପ ।

ଇନ୍ଦ୍ର ପାଣି ନାହିଁ, ବାଆ ବତାସିରେ
ବୁଡୁଛି ଧର୍ମର ଡଙ୍ଗା,
ଚୋରର ନାଗି ଯେତେ ହେଉଛି, ଲୋକେ ଲୋ,
ବିଶ୍ୱାସେ ଦଅନ୍ତି ଦଗା ।

ଗୋରୁ ବୈଷ୍ଣବରେ ତୁଟିଛି ଭଗତ,
ଦେବସ୍ୱ ହରନ୍ତି ଜନେ;
ରଜା ହୋଇ, ପ୍ରଜା ପାଳନ୍ତି ନାହିଁ ଲୋ,
ପିଅର ସେନେହ ପଣେ ।

ଟିକକେ ପ୍ରସାଦ ଉଠାଇ ନିଶଙ୍କେ,
ନିଆମ କରନ୍ତି ପଗ;

କଥା ଦେଇ ଥରେ, ସେହି କଥାକୁ ଲୋ,
ଚେକ ମନେ ରଖୁଛୁ ଭଲ ?

୨

ଦିନ ଥିଲା, ଯେବେ ଏ ମର୍ତ୍ତ୍ୟମଣ୍ଡଳେ
ବିଶ୍ୱାସ ହଟିଲେ ନଟେ,
ବୁଝୁଥିଲେ ନିଜେ ଦେବତା ଆସି ଲୋ,
ଧର୍ମ ବୁଡ଼ିଯିବା ଡରେ ।
ଶାସ୍ତ୍ରେ ଅଛି ସଭା କୁରୁସଭାତଳେ
ହରନ୍ତେ ଦ୍ରୌପଦୀ ବାସ,
ବିଷ୍ଣୁ କୃଷ୍ଣ କରି ରଖିଲେ ମାନ ଲୋ,
କୁରୁ ଥାଟ ଗଲେ ନାଶ ।
ସେହି ସରି ଏବେ ସହସ୍ର ଯୁଗର
କଥାଏ କହିବି ମୁହିଁ;
ଦୋଷ ଗୁଣ ମୋର ନ ବାଛୁ କଛୁ ଲୋ,
ଶୁଣ ମନ ଧ୍ୟାନ ଦେଇ ।

୩

ସଇ ନରସିଂହଦେ, କହୁଛୁ ଶ୍ରୀବତ୍ସ;
ବ୍ରାହ୍ମଣ ପୁଅଟି ଦିହେଁ;
ଶ୍ରେଷ୍ଠ ଭିଛ ମିଶ୍ର ସେ ନରସିଂହ ଲୋ,
ଶ୍ରୀବତ୍ସ ମାସ୍ତାନ ଥସ୍ୱେ ।
"ସତ୍ୟ, ନରସିଂହ, ବୃନ୍ଦାବନ ପୀଠେ
କଟିଛ କଦମ୍ବ ମୂଳେ;

ବସି ତହିଁ ଧର୍ମ ଦେଉଳେ, ଗୋପାଳ
ଶୁଣି ତ ଅଛନ୍ତି ଭଲେ ।

ଏବେ ଯେବେ ସତ୍ୟ ଭାଙ୍ଗିବ, ଏ ମର୍ତ୍ତ୍ୟେ
ଧର୍ମ କି ପାରିବ ରହି ?
ସୂର୍ଯ୍ୟ ଚନ୍ଦ୍ର ସିନା ନୋହିବେ ଉଦୟ,
ପାତାଳେ ପଶିବ ମହୀ ।

ଝିଅକୁ ତୁମର ମୋ ବାହୁତ ପୁଅ
ସ୍ୱଭାବେ ଦଣ୍ଠଣା ଅତି;
ନାହିଁ ନ କର ହେ, ବଭ୍ରୁ ଧର ଆଜି
ବଢ଼ାଇଦିଅ ଝଟିତ ।"

"ସତ୍ୟ, ନରସିଂହ, କହୁଅଛ ଯେବେ,"
କହନ୍ତି ଗାଆଁର ବୁଢା,
"ବେଗେ ବଭ୍ରୁଧର ଦିଅ ହେ ବଢ଼ାଇ,
ବୃଥାରେ ନ କର ହେଳା ।"

କହନ୍ତି ସେ ବନ୍ଧୁ ବାନ୍ଧବ ଯେତେକ
ଯୋଡ଼ା ହୋଇଥିଲେ ଆସି,
"ସତ୍ୟ କରିଥିଲେ, ସାର ବଭ୍ରୁଧର,
ମିଛେ ଠାଳ ନାହିଁ ବସି ।"

"ସତ୍ୟ କରିଥିଲେ, ବଢ଼ାଅ, ଗୋସାଇଁ,
ମଙ୍ଗଳକୃତ୍ୟ ହେ ଝଟେ;"—
ଡାକ ଅଜ୍ଞା ଦେଲେ କାହିଁ ସ୍ୱଜନ ଲୋ,
ନ୍ୟାୟେ ବୃହସ୍ପତି ସତେ ।

୪

ତେବେଲେ ନରସିଂହ ନ ମାନିଲା କିଛି,
କହିଲା ବଢ଼ାଇ କର—
"ଉଚ୍ଚ ମିଶ୍ର ହୋଇ, ମାନ୍ତ୍ରାନ ଘରେ ମୁଁ
ଝିଅକୁ ଦେବ କପର ?

ସତ୍ୟ ଯେବେ ମୁହିଁ କରିଥିବ ଥଯ୍ୟେ,
ନ ପାଳ ଯିବଇ କାହିଁ ?
ଏ ଗୃଣ୍ଡାଳ ଘରେ ଝିଅ ମୋ ଦେବାକୁ
ସତ୍ୟ ମୁଁ କରି ଚ ନାହିଁ ।

ତାକୁ କେ ଶୁଣିଛି ମୋ ସତ୍ୟ ବଚନ,
ବତାଉ ଠିକେ ଏ ଗଡ଼େ;
ବାପର ସୁପୁତ୍ର ହୋଇ, ମୁଁ କୁଳୀ
ଯାଉ ଅଜ ଯିବ ଭଲେ ।"

"ସତ, ହେ, ଶ୍ରୀବତ୍ସ, ସତ୍ୟ ଯେବେ ମତ୍ତ୍ୟେ
କଣ୍ଡିଛନ୍ତି ନରସିଂହ,
ତାଙ୍କ କେ ଶୁଣିଛି; ଠିକେ ଜଣାଗଲେ,
ମୁଣ୍ଡକାଟ ହେବା ଥୟ ।"

କହିଲେ ରାଜନ ବୁଝାଇ ଶ୍ରୀବତ୍ସେ,
ଶୁଣିଲେ ସେ କାଞ୍ଚି ଲୋକେ;
"ଜଗତ ଏକା ଏ" ବୋଲି, ଚହଳ ଲେ,
ପଡ଼ିଗଲା ଦେଶପାକେ ।

"ଜଗତ ଏକା ଏ" ବୋଲି, ନୀଚ ଗଲେ
ହୋଇ ବନ୍ଧୁ ଜନ ତୁନି;

"ଜଗତ ବନ୍ଧୁର", ମନ ଉଲ୍ଲାସେ ଲୋ,
କହେ ନରସିଂହ ଶୁଣି ।
ଗର୍ଜେ ବନ୍ଧୁରଇ, "ଅଣୁ ତ୍ରିଭୁବନେ
ଅଣିମ କାହାକୁ ସେହୁ;
କିଏ ଥିଲା, ଅଛୁ ଶୁଣି ଯେ କହିବ
ମତେ ଏ ଜୀବନ ଥାଉ ?"
"କିଏ ଥିଲା ସତ୍ୟ, ସତ୍ୟ ଯେତେବେଳେ
ଥିଲା ନରସିଂହ କରି;
କାହିଁ ଗଡ଼େ ଅଜ୍ଞ ଆସି କହିବ ଲୋ,
ହାତଗଣ୍ଠି ଯିବ ପଡ଼ି ।"

୫

ବେଦ ତନ୍ତ୍ର ପୁଅ ଫେରାଇ, ଶ୍ରୀବତ୍ସ
ଅଇଲେ ଦୁଖିତେ ଅତି;
ବରଯାତ୍ରୀ, ବନ୍ଧୁ ତେଲଙ୍ଗି ରାଜା ଲୋ,
ଫେରିଲେ ପାଲିଙ୍କି ଛଡି !
"ଧର୍ମ ଯେବେ ଥିବ, ଦିଅଁ ହୋଇଥିବେ,"
କହିଲା ଦୁଃଖି କପାଳ,
"କଥା ଆସି ଠିକେ ନ କହି ଯିବେ କି ?
ନୋହିଲେ, କି ଗୁରୁ ମୋର ?"
ଅନ୍ନ ପାଣି ତ୍ୟଜ୍ୟା କରି, ବୃନ୍ଦାବନେ
ଗଲା ସେ ଶ୍ରୀବତ୍ସ ଗୁଳି;
ସିଂହାସନ ତଳେ ଗୋପାଳଙ୍କର ଲୋ,
ଜଣାଇଲା କର ଯୋଡ଼ି—

"ସତ୍ୟ କହ, ହରି, ଗଲା ନରସିଂହ
    ଏହି ସିଂହାସନ ତଳେ,
ଯାଇ ଗଡ଼େ ଏବେ ଅମାନ୍ୟ ହେଉଛି;
    ଧର୍ମ କି ରହିବ ଭଲେ ?
ସତେ ଯେବେ, ପ୍ରଭୁ, ଶିଳା ନୋହିଥିବ,
    ଘେନା ମୋ କହିବ କଥା;
ପୁଅ ବଳୀଧର ହେବ, କାଞ୍ଚି ଗଡ଼େ
    ମୁଁ ଠେକି ଗୁଳିବ ମଥା ।"

୭

ଶୁଣିଲେ ଗୋପାଳ ବୃନ୍ଦାବନସାଇଁ,
    ତନ ଭକ୍ତନ [illegible] ଉତ;
ଏ ସାରା ସୃଷ୍ଟି ସେ, ବସି ଦେଉଳେ ଲୋ,
    ଶୁଣୁ ଛି ଅଛନ୍ତି ନତ ।
ଦୁଃଖିଦୁଃଖ କଥା, ଭଗତ ଗୁହାରି
    ଟାଳି ନ ଦଅନ୍ତି ଦନେ;
ଦୀନବନ୍ଧୁ ଗାନା ଜଡ଼ୁଛି ପରି ଲୋ,
    ମର୍ତ୍ତ୍ୟେ ଅଜ ତ୍ରିଭୁବନେ ।
ସତ୍ୟ ଯୁଗେ ଗଜ ଡାକିଥିଲେ ଜଳେ,
    ଟେକେ ସେ ଗ୍ରାହକୁ ନାଶି;
ଗଜ-ଉଦ୍ଧାରଣ ବେଶ ଅଦ୍ୟାପି ଲୋ,
    ହୁଅନ୍ତି ଦେଉଳେ ବସି ।
ତ୍ରେତାଯୁଗେ ପୁଣି ଅସୁରେ ଯେକାଳେ
    ଧ୍ୱଂସିଲେ କ୍ଷିତିମଣ୍ଡଳ,

ସୂର୍ଯ୍ୟ ଚନ୍ଦ୍ର ବାଟେ ଗୁଲ ନ ଦେଲେ ଲୋ,
ସୃଷ୍ଟି କଲେ ଝଲମଲ;
ରାମ ଅବତାର ଧରି ପ୍ରଭୁ ମର୍ତ୍ତ୍ୟ,
ମାଇଲେ ଦଇତ ବଂଶ;
ରାମାୟଣ ସାତ କାଣ୍ଡ ପଢ଼ିଲେ ଲୋ,
ପାଇବ ତଥ୍ୟ ପ୍ରକାଶ ।
ଦ୍ୱାପରେ ଯଶୋଦା ପେଟେ ଜନ୍ମ ହୋଇ,
ଗୋଟେ ଲଗାଇଲେ ଲୀଳା;
ମାରି କୁରୁ ବଂଶ, ମହୀମଣ୍ଡଳେ ଲୋ,
ଧର୍ମ ରଖିଗଲେ ପରା ।
ଏବେ କଳିଯୁଗେ ଲୋପ ହେଲେ ଧର୍ମ,
କଳ୍କି ଅବତାର ଧରି,
ମର୍ତ୍ତ୍ୟ ପୁଣି ଦନେ ଭଗତ ବାଞ୍ଛା ଲୋ,
କରିବେ ପୂର୍ଣ୍ଣ ମୁରାରି ।

୨

ସେହୁ ସେ ମୁରାରି ବସି ସିଂହାସନେ,
ଭଗତ ଗୁହାରି ଶୁଣି,
ସତ୍ୟ ଭୂମି ଧର୍ମ ହଜିଲା ବେଳେ ଲୋ,
ହୋଇ କି ପାରନ୍ତେ ଭୂନ ?
କହିଲେ, "ଗୁଲ, ମୁଁ ଯାଉଛୁ, ଶ୍ରୀବତ୍ସ,
କଥା ଜଣାଇମି ଟିକେ;
ପୁଅ ବଳଭଦ୍ରର ହେବ କାଞ୍ଚି ଗଡ଼େ
ନାଆଁ ଟା ଘୋଷିବେ ଲୋକେ ।

ମୋ ପାଦ ନୂପୁର ଶବଦ ଶୁଣି, ତୁ
ଜାଣିମୁ ଯିବାର ମୋର;
ଫେରି ପଛେ କେବେ ନ ଚାହିଁ ଦେବୁ ରେ;
ଚାହିଁଲେ ବିପତ୍ତି ଘୋର ।"

୮

ଫେରି ବୃନ୍ଦାବନୁ ଚାଲନ୍ତି ଶ୍ରୀବତ୍ସ,
ମନ ତା ପ୍ରସନ୍ନ ଅତି;
ଝୁଣୁଝୁଣୁ ପଛେ ଚାଲନ୍ତି ତଳି ଚଳି,
ପ୍ରଭୁ ତ୍ରିଭୁବନପତି ।
ବଣ ପରବତ ପାରି ହୋଇ ଯାନ୍ତି,
ପଦ୍ମରେ ନ ଲାଗେ ଖୁଣ୍ଟି;
ନଈ ନାଳ ଡିଙ୍ଗି ଘୁଡ଼ାଇ ବାଟ ଚଳି,
ନ ଜନ୍ମେ ପଥମା କ୍ଲାନ୍ତି ।
ବଚନ ପ୍ରମାଣେ ପଛକୁ ଶ୍ରୀବତ୍ସ
ଭ୍ରମେ ନାହିଁ ଦିଏ ଚାହିଁ;
ଝୁଣୁଝୁଣୁ ବାଜେ ନୂପୁର ପାଦେ ଚଳି,
ଚାଲନ୍ତି ବ୍ରହ୍ମାଣ୍ଡ ସାଇଁ ।

୯

କାଞ୍ଚି ରାଜ୍ୟ ଶେଷେ ମିଳି ସେ ଶ୍ରୀବତ୍ସ
ଆନନ୍ଦେ ହୁଏ ଅଧୀର;
କାଞ୍ଚି ଗଡ଼ ବଡ଼ଦେଉଳ ଶିଖେ ଚଳି,
ବାନା ଉଡ଼େ ଫରଫର ।
କୃଷ୍ଣା ନଈ ଖାଲ ପାରି ହୋଇଗଲେ,
ପ୍ରବେଶ ହେବ ସେ ଗଡ଼େ;

ସାକ୍ଷୀ ଯେବେ ନିଜେ ଦେବେ ଗୋପାଳ ଲୋ,
ଭଣ୍ଡି କେ ପାରିବ ତାରେ ?
ସେହି କୃଷ୍ଣା ନଈ ଜ୍ୟେଷ୍ଠ ଖରା ତାପେ
ନିକାଶେ ଶୁଖିଛି ପରା;
ପାଣି ନାହିଁ, ଖାଲି ହୁ-ହୁ ହୁଅଇ ଲୋ,
ବାଲି ପଦା ଅପନ୍ତରା ।
ଗୁଲନ୍ତେ ସେ ବାଲି ଉପରେ, ପଥର
ଅଧେ ହୋଇଗଲା ପୋତ;
ନୂପୁର ବାଜେଣି ଶୁଭିଲା ନାହିଁ ଲୋ,
ଶ୍ରୀବସ୍ତ୍ର ଭିଜିତ ଅତ ।
କାହିଲା, "କପାଳ ଫାଟିଲା ବେଳକୁ
ସାହା କି ହୋଇବେ ଦଏଁ ?"
ଫେରି ନେହି ପୋଛୁ ଗୁହିଁ ସେ ଦେଲା ଲୋ,
ତଥ୍ୟ ବୁଝିବାକୁ ଥଏ ।
ଦେଖିଲା ଚମକ, ବାଲି ଗଦା ମଧେ
ଠିଆ ହି ଛନ୍ତି ଶ୍ରୀଧର;
ତନ୍ତୁ ପାଦ ଆଉ ନ ଉଠେ ତଳେ ଲୋ;
ମଥା ଯାଇଅଛୁ ତଳ ।
ଅଷ୍ଟାଙ୍ଗ ଶରୀର ପଥର ପାଲଟି,
ତୁଟିଛୁ ଜୀବନ ପରା;
ହେଲେ, ଯେ ଶ୍ରୀଅଙ୍ଗ କେଡ଼େ ଉଜ୍ୱଳ ଲୋ,
ବଦନ କି ଭଳି ତୋରା ।

ହାତେ ବଂଶୀ ଗୋଟି ଧରି ତ ଅଛନ୍ତି,
ଫୁଙ୍କି ନ ପାରନ୍ତି ବକ୍ତ୍ରେ ;
ତେବେ, ସେ ମୁରଲୀ ପବନ ଘାତେ ଲୋ,
ବାଜି ଶୁଭୁଅଛି ମନ୍ଦେ ।
ଦେଖିଲା ଶ୍ରୀବତ୍ସ, ହାତେ ମୁଣ୍ଡ ପିଟି,
ଫେରିଲା ଗଡ଼କୁ ଲାଜେ;
ବୃନ୍ଦାବନସାଇଁ ପଥର ହୋଇ ଲୋ,
ନନ୍ଦ ବାଲି ବନ୍ତେ ରଜେ ।

୧୦

ଦେଖି ନରସିଂହ ଛଳାଇ ପ୍ରଭାତେ,
ଶ୍ରୀବତ୍ସେ କରି ଧିକ୍କାର—
"ପୁଅ ବିଭାଘର କରିବୁ, ସାକ୍ଷୀ କି
ଆଣିଲୁ ଯାଇ, ଚଣ୍ଡାଳ ?"
ମଣିଷ ବଢ଼ାଇ ଘଣ୍ଟକର କଥା,
ଭାଜଇ ବିଧାତା ବଳେ;
ନ୍ୟାୟେ ଯେବେ ନାହିଁ ଚଳିବ, ମର୍ତ୍ତ୍ୟେ ଲୋ,
ବର୍ତ୍ତି କି ପାରିବ ଭଲେ ?
ନନ୍ଦବାଲି ମଧ୍ୟେ ଗୋପାଳ ପ୍ରତିମା
ଦେଖି, ଆଚମ୍ବିତ ଲୋକେ;
ମନଦୁଃଖେ ଅଙ୍ଗନାଭ୍ର ଘଟଣା ଲୋ,
କହିଲା ଶ୍ରୀବତ୍ସ ସ୍ତୋକେ ।
ଦୂତ ପେଷି, ଝଟେ ଆଣିଲେ ବାରତା
ସେ କାଞ୍ଚି ବିବେକୀ ରାଏ;

ବୃନ୍ଦାବନ ଧର୍ମ ଦେଉଳ ଗାଦ ଲୋ,
ଖାଲି ଚଢ଼ିଥିଲା ଥୟେ ।
ତଥ୍ୟ ବୁଝିବାକୁ ଠିକେ କାଞ୍ଚି ଗଡ଼େ
ବାକି ନ ରହିଲା କାଉ;
"ସାକ୍ଷ୍ୟ ଦେବାପାଇଁ", ଘୋଷିଲେ ଲୋକେ ଲୋ,
"ଆସି ତ ଛନ୍ତି ଗୋପାଳ ।"
"ଛି-ଛି, ନରସିଂହ, ଏଡ଼େ କୁଳାଙ୍ଗାର,
ଭାଙ୍ଗିଲ ସତ୍ୟ ବଚନ;
ବୃନ୍ଦାବନସାଇଁ ତୁମ ଲାଗି ଏବେ
ପଥର ହେଲେ କି ଜାଣ" ।
ଧିକ୍‌କାର ପିଲାରୁ ବୁଢ଼ାଯାଏ ଗଡ଼େ
ଗରଜି ରଚିଲେ ନିନ୍ଦା;
ଏତେବେଳେ ଆସି ନରସିଂହର ଲୋ,
ମନେ ପଶୁଅଛି ଧନ୍ଦା ।
ବିଚାରିଲା, "ଏବେ କି ବୁଦ୍ଧି କରିବି,
ମୃତ୍ୟୁ କି ନୋହିବ କାଠ ?
ମଞ୍ଚେ ଏ ବିପଦୁଁ ତରିବା ପାଇଁ ତ
କାହିଁ ଦିଶୁ ନାହିଁ ବାଟ ।"

୧୧

ହକାରି ଦଉଡ଼ି ଆଣିଲା ନରସିଂହେ
କାଞ୍ଚି ଗଡ଼ ନରନାହା—
"ଶୀବ୍ର ପୁଅକୁ ଦିଅ ଝିଅ ବେଗେ,
ହେବାର ହେଲାଣି ଯାହା ।

ତୁମ ସର ପାପୀ ମୁଣ୍ଡ କାଟି, ରକ୍ତ
ନ ଆସେ ପକାଇ ଗଡ଼େ;
ନୋହିଲେ, ଦେବୁ କି ମଥା କେତେବେଳେ
କୁଡ଼ ସାରନ୍ତାଣି ଉଲେ ।
ଯାଅ ରାମେଶ୍ୱର ବଦରି ଅଶ୍ରମ
କାଶୀ ଗୟା ବୃନ୍ଦାବନ,
ପ୍ରୟାଗ ଗୋମୁଖୀ ଭୁବନେଶ୍ୱର ହେ,
ପୁଣ୍ୟ ମିଳାଚଳ ଧାମ ।
ଏତେ ତୀର୍ଥେ ବୁଡ଼ ପକାଇ, କେତେବେ
ଛଡ଼ାଇ ଆସିବ ପାପ;
ତେବେ ଅବା ଏଡ଼ପାରିବ ଅଳପେ
ମର୍ତ୍ତ୍ୟ ଦେବତାଙ୍କ କୋପ ।"
ରାଇଗୁରୁ ବୁଢ଼ା ବୀରଭଦ୍ର ବ୍ରହ୍ମା
କହିଲେ ଠୁଙ୍କାଇ ମଥା—
"ନୋହିଲେ, ଏ ଧର୍ମ ଦେବ୍ରାହ୍ମଣ କେବେ
ଥିଲେ କି ଗଢ଼ିବା କଥା ?"
ସଭାଜନେ ଏକା ସ୍ୱରକେ ସଭିଏ
କହାଳି ଧଇଲେ ଦୁଆ;
ଗଡ଼େ ଗଡ଼ଲୋକେ ଭାଷିଲେ ଶୁଣି ଲୋ,
"ଜଗତ ବିଗୁର ଏହା ।"

୧୨

ଶିବସ୍ତ ପୁଅକୁ ଦୁଲଣା ଦିଅ ତା
ଦେଇ, ନରସିଂହ ଝଟ

ତୀର୍ଥ କରିବାକୁ ବାହାର ହେଲି ଲୋ,
ମୁଣ୍ଡ ଯେ ନୋହିଲା କାଠ ।

ହେଲେ, ସେ ମୁଣ୍ଡ ତା ଲାଜ ଅପମାନେ
ଯାଏଁ ଭୂଇଁତଳେ ଲୋଟି;
ଭଡ଼େ ପାପଭାର ମାଡ଼ ପଡ଼ୁଛି ଲୋ,
ଲହେ ତନ୍ତ୍ରେ ବୁକୁ ଗୋଟି ।

ରାମେଶ୍ୱର ପୀଠେ, ଦ୍ୱାରକାନାଥେ ସେ
ଦର୍ଶନ ବଢ଼ାଇ ଆଗେ,
ଗୃନା ପାଦ ତହୁଁ ଉତ୍ତର ଦେଶେ ଲୋ,
ମିଳାଇ ଯାଇ ପ୍ରୟାଗେ ।

ବଳି ମହୀତଳେ ପ୍ରୟାଗରାଜକୁ
ତୀର୍ଥ କି ଅଛଇ ଆନ ?
ଗଙ୍ଗା ଜଳେ ତହିଁ ମିଶି ଯମୁନା ଲୋ,
ଦିଶେ କି ଦିବ୍ୟ ଦର୍ପଣ ।

କ୍ଷୀର ପ୍ରାୟେ ଅଧେ ଧଳା ଦିଶେ ପାଣି,
କଜଳ ଅଧିକ ଆଉ;
ଶିବଙ୍କ କପାଳ କଳା ଭସ୍ମେ କି ଲୋ,
ଧଳା ନାଗ ଦାଉ ଦାଉ !

ସେହି ଘାଟେ ଥରେ ବୁଡ଼ ଯେ ପକାଏ,
ଗୋହତ୍ୟା ପାତକ ଛଡ଼େ;
ପଶି ନରସିଂହ ବେଳେ ପାଣିକି ଲୋ,
ମୁଣ୍ଡ ବୁଡ଼ାଇଲି ତଳେ ।

ଉଠନ୍ତେ, ସେ ମୁଣ୍ଡ ଲାଗିଲା ଉଶ୍ବାସ,
ପାପ ଅଧେ ଗଲା କଟି;
ଭରସି ତହୁଁ ସେ ଉତ୍ତରେ ପୁଣି ଲୋ,
ଗଲା, ବିଷ୍ଣୁ ନାମ ରଟି ।

ହରଦ୍ୱାରେ ଅଣ୍ଟା ଭିଡ଼ିଲା ପଣ୍ଡାହୁଁ,
ଯିବ ବଦ୍ରୀନାରାୟଣ;
ଗଙ୍ଗୋତ୍ରୀ ପାରି ହୁଅନ୍ତେ, କଲା ଲୋ,
ମୁଖେ ହରି, ପାଦେ ଧ୍ୟାନ ।

ଯାଆନ୍ତେ ସେ ବାଟେ, ଯାତ୍ରୀ ଅସୁମାରି
ପଡ଼ିଯାନ୍ତି ରସାତଳେ;
ଏଡ଼େ ଧର୍ମବଳ ଅଛି ତାହାର ଲୋ,
ପାରି ହୋଇଯିବ ଭଲେ ?

ସେ ଯାତ୍ରୀ ଲୋକଙ୍କ ହାଡ଼ କୁଡ଼ମାନ
ଦେଖି, ତା ଥରଇ ଦେହ
ହେଲେ, ବୁଜି ଆଖି ଚାଲି ସେ ଗଲା ଲୋ,
ରଖି ପ୍ରଭୁପାଦେ ଲକ୍ଷ୍ୟ ।

ସାମାନ୍ୟ ତପସ୍ୟା ନୁହେଁ ମନେ ତାର
ଯେ ଯାଇ ପାରଇ ତହିଁ;
ମହା ଭକ୍ତ ମନେ, ବଦ୍ରୀନାଥଙ୍କୁ ଲୋ,
ମଥା ନରସିଂହ ନୋଇଁ ।

ବଢ଼ାଇ ଦଶନ, ବାହୁଡ଼ି ଫେରନ୍ତେ
ଅଇଲା ସେ ବୃନ୍ଦାବନେ;

ନେସୁ ଲବ୍ଧ ଡାଳ, ଠିଆ ହି ହେଲା ଲୋ,
କଦମ୍ବମୂଳେ ମଉନେ ।
ଦନେ ସେ କଦମ୍ବମୂଳେ ଶ୍ରୀବତ୍ସଙ୍କୁ
ସତ୍ୟ ସେହୁ ଥିଲା କରି;
ସେହି ସତ୍ୟ ଆଜି ଭାଙ୍ଗି; ହୋଇଛୁ ଲୋ,
ମଧ୍ୱାତଳେ ଏକେଲ ସରି ।
ଦେଖିଲା, ଦେଉଳ ସିଂହାସନ ପୀଠ
ଶୂନ୍ୟହି ପଡ଼ିଛି ଏବେ;
ଗୁଳି ପାଦ କୋହେ, ଭାଳିତେ ଫେରି ଲୋ,
ଅଇଲା ଦୋସର ଠାବେ ।

୧୩

କାଶୀ ବିଶ୍ୱନାଥ ଅଭିଷେକ ସାରି,
ଗୟାରେ ଗଡ଼ାଇ ପିଣ୍ଡ,
ଦେବଲୋକ, ପିତୃଲୋକ ତୋଷିଲା ଲୋ,
ସଲଖି ଗୁଳିଲା ମୁଣ୍ଡ ।
ବଙ୍ଗ ଦେଶ ଏବେ ବୋଲୁଛନ୍ତି ଯାକୁ,
ଏଭଳି ପ୍ରଖ୍ୟାତ ଭୂଇଁ,
କଥା ବାଙ୍କେ ଲୋକେ କହନ୍ତି ତହିଁ ଲୋ,
ମର୍ମ କେ ପାରିବ ଛୁଇଁ ?
ଏବେ ସିନା ତୀର୍ଥ ନାହିଁଛି ସେ ଦେଶେ;
ପୀଠେ ସେ ନୋହୁଛି ଗଣା;
ଲକ୍ଷ ସେବେ ଥିଲା ମହା ବନସ୍ଥେ ଲୋ,
ନାଆଁ ତା ନ ଥିଲା ଶୁଣା ।

ନୋହିଲେ, ସେ ରାଜ୍ୟେ ପାଦ ନ ପକାଇ
ଅସି କ ଥାଆନ୍ତା ସେଠୁ ?
ଗଙ୍ଗା ପରି ତହିଁ ବୋହୁଅଛନ୍ତି ଲୋ,
ଆନ କିଛି ନାହିଁ ଥାଉ ।
ବାବା ବୈଦ୍ୟନାଥ ବାଟେ ଆସି, ହେଲା
ମାସକେ ଭୁବନେଶ୍ୱର;
ପ୍ରଭୁ ଲିଙ୍ଗରାଜ ଦର୍ଶନ କଲି ଲୋ,
ପାରି ଭୀମ କୁଣ୍ଡେ ବୁଡ଼ ।
ବିନ୍ଦୁସାଗର କି ଖୋଳା ହୋଇଥିଲା
ଅଧା ଶଳିକାହି ସତେ ?
ଏ ଦିବ୍ୟ ସୁନ୍ଦର ଦେଉଳ ଗୋଟି ଲୋ,
ଗଢ଼ା ନୋହିଥିଲା ମୋଟେ ।
ବାବା ବୈଦ୍ୟନାଥ ଲିଙ୍ଗ ସେ ଥାପିଲି,
ଦେଉଳେ ନାହିଁ ସାକ୍ଷାତ;
ଖରି ଖାଇ, ଆଜି ତାଆଁ ପ୍ରକଟ ଲୋ—
'ଖରିଖିଆ ବୈଦ୍ୟନାଥ' ।
କେ ଖେଳି ଅଛି ଏ ମଣ୍ଡେ, ତାଙ୍କ ପାଇଁ
ଦେଉଳ ପାରିବ ତୋଳି ?
ଅନ୍ଧ ହେଲି ଚନ୍ଦ୍ର ବନ୍ଧାଣି ଟିକେ ଲୋ,
ତୋଳି ମନ କଲି ବୋଲି ।

୧୪

ଛାଡ଼ତ ସେ କଥା; ଆଣ, ନରସିଂହ
ଭୁବନେଶ୍ୱରରୁ ଯାଇ,

ଦି ଦିନ ବାଟେ ସେ ପର୍ବତ ଶିଖେ ଲୋ,
ଚଢ଼ିଲା ପ୍ରହର ଦୋଇ ।

ଦୂରନ୍ତେ ନଡ଼ିଆ ବଣେ ରହିଗଲା
ଲଟ ନୀଳାଚଳ ଧାମ;
ଏ ବଡ଼ଦେଉଳ ଥିଲା କି ସେବେ ଲୋ,
ଦଶନ୍ତା ବନ୍ଧି ଗଗନ ?
କାଶୀ ବିଶ୍ୱନାଥ ଅନୁକ୍ରମେ ତହିଁ
ଥାପି ଶିବ ଲିଙ୍ଗ ଗୋଟି;
ପୂଜିଲା ଦିବସେ ସେ ନରସିଂହ ଲୋ,
ଜାଗର ଜାଳିଲା ଘୃତ ।

ଗାଆଁ ଗଣ୍ଡା କିଛି ନ ଥିଲା ସମୀପେ,
ଥିଲା ଚିଲ୍କାର ପାଣି;
ଏବେ ସିନା ଦୂରେ ହଟିଯାଇଛି ଲୋ,
କୋଶ କି ନୋହିବ ତିନି ?

ସେ ଚିଲ୍କା କୂଳ ପର୍ବତ ଉପର
ବିଶ୍ୱନାଥ ପୀଠେ ରହି,
ଧ୍ୟାନେ ନରସିଂହ ଜାଣିଲା, ଭାଗ୍ୟେ ଲୋ,
ନୀଳାଦ୍ରି ଦର୍ଶନ ନାହିଁ ।

କହିଲା, "କି ଲଭ୍ୟ ଧରି ଏ ଜୀବନ
ଦଇନେ ଏ ମହୀତଳେ ?"
ଇଚ୍ଛାବଳେ ପିଣ୍ଡୁ ପ୍ରାଣ ତା ଛୁଟେ ଲୋ,
'ଉଡ଼ି ଚାଲିଗଲା ଭଲେ ।

ଶତ୍ରେ ଯୁଗ ଅନ୍ତେ ଖଣ୍ଡେ ହୁର ଗ୍ଲାଡ଼
    ବସିଲ୍ଲ ତେଲ୍ଲଙ୍ଗ ଗାଆଁ;
ଶିବ ଲିଙ୍ଗ ଲୋକେ ଶଦ୍ଧାଲେ ଠିକେ ଲୋ,
    ଦେଲେ ବିଶ୍ବନାଥ ନାଆଁ ।
ବିଶ୍ବନାଥ ପରବତ ଶିଖେ ଅଙ୍କ
    ଦେଉଳ ଦଶେ ଘଟଣ;
ଦଶ କୋଶ ପୃଥ୍ୱୀ ଆକାନ୍ତ ଧର ଲୋ,
    ରୂପ ତା ପ୍ରକଟ ଜାଣ ।
ରଜେ ବାଂଝ ଆସି, ଜଣାଇ ଗୁହାରି,
    ଜନମ କରଇ ପୁଅ;
ଅନ୍ଧ ନେତ୍ର ପାଏ; ଭଲ ହୁଅଇ ଲୋ,
    କୁଢ଼ୀ, ପାପ କର କ୍ଷୟ ।
ଯେତେ ହୁରଯାଏ ଦଶଇ ତ୍ରିଶୂଳ,
    ମାଡ଼ଇ ଦସ୍ତାର ପାଣି;
ନ ବାଧେ ନଅଙ୍କେ, ମରୁଢ଼ ଢାଳେ ଲୋ,
    କଜେ ଲକ୍ଷ୍ମୀ ଠାକୁରାଣୀ ।

୧୫

ଏତକରେ କଥା ସାରନ୍ତ, ଅଧିକ
    ବଖାଣ ନ କର ଆଉ;
କହୁଥିଲି ପର, ରହିଲେ ଥରେ ଲୋ,
    ନଇ ବାଲି ବନ୍ଦେ ପ୍ରଭୁ ।
ମନ୍ଦା ସଲଟଣେ ନେଲେ ଜାଣି ରଜା,
    ରଖିଲେ ଦେଉଳ ଢୋଲି;

ପାଞ୍ଚ ଧୂପ ଟିମ ଅଳତି ନତ ଲୋ,
ଖଣ୍ଡା ଅଗ ଦେଲେ କର ।

ଏ ମର୍ତ୍ତ୍ୟମଣ୍ଡଳେ କାଞ୍ଚି ଦେଶୁଁ ବଳି
ଦେଶ ତ ଅଳପ ଅଛି;
ସୁନାଗୁଣ୍ଡେ ଧୂଳି ତିଅର ଅବା ଲୋ,
ହୀରାଖଣ୍ଡେ ଗଢ଼ା ମାଟି ।

ହେଲେ, ସବୁଥିରୁ ବଡ଼ ଟି ଗୋପାଳ,
ମାଜଣା ନୈବେଦ୍ୟ ପାଇ;
"ଗୋପାଳେ ମୋ ଥିଲେ", ଘୋଷନ୍ତି ରଜା ଲୋ,
"ଆନ କିଛି ଲୋଡ଼ା ନାହିଁ ।"

୧୭

ଯୁଗେ ଯୁଗେ ବିତି ଯିବାରେ, ଦିନେକ
ଓଡ଼ିଶା ମଉଡ଼ମଣି,
ମହାରଜା ଅପମାନେ ଗରଜି ଲୋ,
ଗଲେ କାଞ୍ଚିଗଡ଼ ଜିଣି ।

ହାରି କାଞ୍ଚି ରଜା ଭେଟିଲେ ସଜନେ
ଆପଣା କୋଳର ଜେମା;
କହନ୍ତି ସେ ଧନ, ମନେ ତ ଥିବ ଲୋ,
ଦେଲେ ଗୋପାଳ ପ୍ରତିମା ।

ଆଣି ଗୋପାଳଙ୍କୁ ଓଡ଼ିଶା ନୃମଣି
ରଖିଲେ କଟକ ଗଡ଼େ;

ଗୋପାଳେ ତ ଥିର ନୁହନ୍ତି ତହିଁ ଲୋ,
ରହନ୍ତି ନାହିଁ ଦେଉଳେ !
ଗଲେ ସେ ଶଲକା ସେପାଖେ କନ୍ତଳ-
ବାଇ ଗାଆଁ ଝାଙ୍ଗି ବଣେ;
ସେଠି ମଧ ମନ ଥୟ ନ ଟଳେ ଲୋ,
ଉଡ଼େ ଯିବାପାଇଁ ଅନେ ।
ଉବୁମୁଖି ପାଠ ଟାଣ୍ଡିଆ ଲକ୍ଷ୍ମଣ
ଘରେ ତାର ଥିଲ ଶୋଇ;
ଦେବତା ଦେଖିବେ ବଡ଼ ଭଗତ ଲୋ,
ମଝେ ତା ସର କେ ନାହିଁ ।
ସପନାଇ ତାଙ୍କୁ କହିଲେ ଗୋପାଳ—
"ଦେଖ, ରେ ପଟ୍ଟନାୟକ,
ଏ ଝାଙ୍ଗି ବଣେ ମୁଁ ରହି ନ ପାରୁଛି,
ବନେ ନ ଭୋଗିଲି ସୁଖ ।
ନେଇ ମୋତେ ତୁହି ଥାପିବୁ ତୁନିତେ
ଶଲକା ସେପାରେ କୂଳେ;
ଦେଖିବ ଦରଶି କେତେ ତୋ ଭଗତ
ମୋଠାରେ ଏ ମହୀତଳେ ।"

୧୭

ଠେକ ନିଜ ମୁଣ୍ଡେ ଗୋପାଳ ପ୍ରତିମା,
ଗ୍ଭଲଇ ବାଟେ ଲକ୍ଷ୍ମଣ;
ମୁଣ୍ଡେ ଅଜି ବିଜେ ବ୍ରହ୍ମାଣ୍ଡସାଇଁ ଲୋ,
ଆନନ୍ଦେ ଉଛୁଳେ ମନ ।

ଭାଗ୍ୟ ତାକୁ ତଳେ ନ ପଡ଼ିଲା ଜଣା,
ଶ୍ରମ ନ ଲାଗିଲା କାୟେ;
ପଥର ହୋଇ, ସେ ଗୋପାଳେ ସତେ ଲୋ,
ଉଚ୍ଛ୍ୱାସ ଛୁଟାନ୍ତି ପ୍ରାଏ ।

ଚିଲିକା ପାଣି ସେ ପୋଖରୀ ସମାନେ
ହୋଇ ଗୃହଗଣ ପାଶ,
ଅଚମ୍ବିତେ ନାଥ ବାହୁ ଅନାଏଁ ଲୋ,
କାମୁଡ଼ ଜଳ ନାଗରୀ ।

ଭାର୍ଗବୀ ମୁହାଣେ ଓହ୍ଲାଇ ଗୃହଳ,
ମୁଣ୍ଡେ ଘା ବଜେ ଗୋପାଳ,
ଉଡ଼ି ଅବା ବାଟେ ଅଇଲା ଝଟେ ଲୋ,
ହାଠ ଦାମୋଦରପୁର ।

ଚଳି ତହୁଁ କଣ୍ଟୁ ଉତ୍ତରେ ଆସନ୍ତେ,
ଦେଖିଲା ଘୋର ବନସ୍ଥ;
ଉରଥାନ୍ତା; ଛନ୍ତ୍ର ମୁଣ୍ଡେ ମୂଗ୍ଧର ଲୋ,
ଉଲ୍ଲାସ ହୋଇଲା ଚିତ୍ତ ।

ହେଲେ, ମୁଣ୍ଡେ ଭାର ହୁଅନ୍ତେ ମୂଗ୍ଧର,
ଧରି ସେ ନ ପାରେ ଠେକି;
ନୋଇଁ ହାତେ ଥିବେ ଓହ୍ଲାଇ, ଉଠଲେ ଲୋ,
ଦେଲା ସଯତନେ ରଖି ।

କହିଲା, "ସାର୍ଥକ, ତ୍ରିଭୁବନନାଥ,
ହେଲା ଏ ଜନମ ସତେ";

ନୋଇଁ ମଥା, ଲହ୍ରେ ତନ୍ଦ୍ରାଇ ଭୂଇଁ ଲୋ,
ଫେଟି ଗୁଳିଗଲା ବାଟେ ।

ତା ଚଉଁଶେ ଏବେ ଅଛଇ ଦୁଲଣ୍ଡ,
ଖୁରୁଧା କରଣେ ସାର;
ରଜା ପାଇକଙ୍କୁ ନ ଥିଲା ଡର ଲୋ,
ଗୁଣ ଧର୍ମେ ବଳିଆର ।

ତାସଦେଇ ପୀଠେ ମଣ୍ଡପ ଠେକନ୍ତି,
ଭୋଗ କରିଅଛନ୍ତି ଖଞ୍ଜା;
ମନ ଅନ୍ବେଷଣ ଦିଅ ମା ତାକୁ ଲୋ,
ଜଡ଼ୁଛନ୍ତି ଅଭସ୍ଥ ଧୋକା ।

୧୮

ତମାଲର ମୂଳେ ରହିଲେ ଗୋପାଳ
ଏଣେ ବାଆ ପାଣି ଖାଇ;
ମନେ ପଡ଼ୁଥିବ ବୃନ୍ଦାବନର ଲୋ,
କଦମ୍ବ ଶୀତଳ ଛାଇ ।

ଦେଖି ଆଖପାଖ ଲୋକେ ଆଶିରସେ
ମଥା ନୁଆଇଁଲେ ତଳେ;
'ଗୁପ୍ତ ବୃନ୍ଦାବନ' ବନସ୍ଥ ନାଆଁ ଲୋ,
ନାହିଁ ନ ଥିବ ମହୀରେ ।

ଦିନବେଳେ ତହିଁ କୁଆ କି କୋଇଲି-
ରବ କେ ଶୁଣଇ କାନେ ?
ଗଛଡାଳେ ହରି ମୁରଲୀ ହାତେ ଲୋ,
ବଜାନ୍ତି ଉଦାସ ମନେ ।

୧୯

ନରସିଂହ ଯାଇ ନ ପାଇଲ୍ଲ ମଞ୍ଚେ
ନୀଳାଦ୍ରି ଦର୍ଶନ ପାଇଁ;
ସାକ୍ଷୀ ଏବେ ହୋଇ ରହିଲେ ତାର ଲୋ,
ବାଟେ ବୃନ୍ଦାବନସାଇଁ ।

ପତିତପାବନ ନାମ ତାଙ୍କ ସାର,
ଏ ମହାମନ୍ତ୍ରଲେ ଡାକୁ;
ପାପୀ ନେହାଲ୍ଲଲେ ଧୋଇଲେ ପାପ ଲୋ,
ଭଗତେ ଗଣନ୍ତି ତାଙ୍କୁ ।

ଶ୍ରୀବତ୍ସ ଗୁହାରେ ଯେବେ, ବୃନ୍ଦାବନୁ
ଥିଲେ କାଞ୍ଚି ଗଡ଼େ ଆସି;
ଏବେ ନରସିଂହ ଭଗତ ଲାଗି ଲୋ,
ହୋଇଲେ, ବନସ୍ଥବାସୀ ।

ନାଅ ତାଙ୍କ 'ସାକ୍ଷିଗୋପାଳ' ପ୍ରଖ୍ୟାତ,
ଜାଣନ୍ତି ଜଗତ ଜନେ;
ଆସନ୍ତି ଶ୍ରୀକ୍ଷେତ୍ରେ ଯେତେ ଯାତ୍ରୀଏ ଲୋ,
ସାକ୍ଷୀ ମାନୁଛନ୍ତି ମନେ ।

ଯମଦୂତେ ଯେବେ ଝଡ଼ ମର୍ତ୍ତ୍ୟ ନେବେ,
ପାପ ପୁଣ୍ୟ ହେବ ତୁଲ;
ଚିତ୍ରଗୁପ୍ତ ଅଗେ କହିବେ ଠିକେ ଲୋ,
ପ୍ରଭୁ ଶ୍ରୀ ସାକ୍ଷିଗୋପାଳ ।

୨୦

ଅସି କେତେ ଦିନେ ବାବା ବ୍ରହ୍ମଗୃସୀ
ତୋଳିଲେ ଦେଉଳ ଗୋଟି;
ଖଞ୍ଜା କରାଇଲେ ପୂଜା ମାଜଣା ଲୋ,
ଛତିଶ ପ୍ରକାରେ ନୀତି ।

ତିନିଶ ବରଷ ବିତିଲାଣି ଏବେ,
ଥିବ କି ନୋହିଲେ ହରି ?
ରହୁଛନ୍ତି ହରି ଦେଉଳେ, ଦେଖ ଲୋ,
ପ୍ରବାସୀ ସ୍ୱଭାବ ଧରି ।

ଅନ୍ନ କି ବ୍ୟଞ୍ଜନେ ନ ବଳାନ୍ତି ମନ,
ସୌଖ୍ୟେ ନ ରହନ୍ତି ବସି;
ଛତୁ ସରପୁଳି ଗଜା ଡାଲିମ୍ବେ ଲୋ,
କ୍ଷୁଧା ମେଣ୍ଟୁଛନ୍ତି ବସି ।

ଓପାସେ ଯାହା କି ଦିହନ୍ତେ ମୁରାରି,
ଭଲ ଏ ଦି ଗୁଣେ ତହୁଁ;
ବାବା ବ୍ରହ୍ମଗୃସୀ ଖଞ୍ଜି ନ ଥିଲେ ଲୋ;
କିଏ ଖଞ୍ଜିଥାନ୍ତା ଆଜ ?

ମରି ସେହି ବ୍ରହ୍ମଗୃସୀ ତ ଯାଇଛନ୍ତି,
ନାଆଁ ରହିଅଛି ବଞ୍ଚି;
କହ 'ବ୍ରହ୍ମଗୃସୀ ବଗିଚ୍ଚ' ଗ୍ରାଏ ଲୋ,
ମହୀରେ କି ଆଉ ଅଛି ?

ପାଶ ଝଡ଼େ ଡାଳୁ ଆମ୍ବ ଜାମୁ ଉଳେ
ପଣସ ବେଲ କଦଳୀ;

ବଢ଼ାଇ ଗୋପାଳେ ଚକ୍ର ମୁଣ୍ଡୋହ୍ନ ଲୋ ।
ଭୃଙ୍ଗ ମନ ତୋଷ କର ।

୨୧

ବୃନ୍ଦାବନସାହିଁ ଟିଠୁଁ ଖଣ୍ଡେ ଦୂରେ,
ବିଧାତା ଘଟଣ ବଳେ,
ପଞ୍ଚକୋଶୀ ମଧ୍ୟେ ପ୍ରଖ୍ୟାତ ଅଛି ଲୋ,
ନରସିଂହପୁର ଭଲେ ।

ଛତ୍ର ଭଟ୍ଟମିଶ୍ର ସାଆନ୍ତ ସେ ଗାଏଁ
ଶାସନ ପ୍ରମାଣେ ରହି;
ଛାଡ଼ ନାହିଁ ଆଗ ଉପତଙ୍ଗର ଲୋ,
କି ତାହା କହିବ ମୁହିଁ ?

କହିଲେ ଅଧିକ, ବାତେନ ବାଢ଼ିବେ;
ତୁନ ହୋଇଯିବା ଭଲ; !
ଯେଣ୍ଟା ହାତେ ସେ ତ ଚଉଦ ପାଅ ଲୋ,
କଥା ଲାଗୁଥିବ ସଲ ।

କହିବେ, ଏ ଘାସ କାଟି ଆସି ଏକା
ଟଙ୍କା ପଣଟି ଠିକେ;
ଶୁଣ, ମୁହିଁ ସାକ୍ଷିଗୋପାଳ କଥା ଲୋ,
ବଖାଣି ସାରିବ ସ୍ତୋକେ ।

୨୨

ସାକ୍ଷିଗୋପାଳ ସେ କହନ୍ତି ଯାହାକୁ
ହୂରନ୍ତେ ଜଗତ ଜନେ,

ଆଖପାଖେ 'ସତ୍ୟବାଦୀ' ନାଆଁ ତା ଙ୍କେ,
ପ୍ରକଟ ମହିମା ଗୁଣେ ।

ସେହି ସତ୍ୟବାଦୀ ଗୁପ୍ତ ବୃନ୍ଦାବନ
ବଉଳ ତମାଳ ତଳେ,
କଳିଯୁଗେ ଅଜ ଦ୍ୱାପର ବଧୂ ଙ୍କେ,
ଦଶୁଛି ଆବର ଥରେ ।

ଦାସ ଗୋପବନ୍ଧୁ ଗୋଠ ବାଳଲୀଳା
କରୁଛି ଭିଆଣ ପୁଣି;
କହ, ଜମ୍ବୁଦ୍ୱୀପେ କେ ନାହିଁ ନାଆଁ ଙ୍କେ,
ସେ ଦାସ ପୁଅର ଶୁଣି ।

ନିଜ ଘର ସୁଖ ନ ଜାଣେ, ନଜର
ବାହୁଡେ ନାହିଁଛି ଦେଖି;
କେତେ ପରପିଲ, ପିଅର ପ୍ରାଏ ଙ୍କେ,
ବଢ଼ାଏ, କୁଶଳେ ରଖି ।

ପ୍ରଭୁ ଗୋପୀନାଥ, ବସିଛି ଦେଉଳେ,
ପାଉଛ ବ୍ରହ୍ମାଣ୍ଡ ସାଗ;
ଶୁଭେ ଗୁଳିନାଅ ସେ ବାଳ ପୁଏ ଙ୍କେ
ଚନ୍ଦ୍ର ଛାଇ ତଳେ ଭଙ୍ଗ ।



# ବିକ୍ରମ ସିଂହ

ସିଂହଭୂମ ରାଜା ପୁରୁଷୋତ୍ତମ ସିଂହ ତାଙ୍କ ବଡ଼ ପୁଅକୁ ସିଂହଭୂମର ସେହି ରାଜଧାନୀ ପୋଡ଼ାହାଟରେ ରାଜା କରି ବସାଇଲେ । ସାନପୁଅ ବିକ୍ରମସିଂହଙ୍କୁ ଆନନ୍ଦପୁର ରାଜ୍ୟ ଖଣ୍ଡିକ ଦେଲେ । ଆନନ୍ଦପୁରରୁ ପୁରୀ ଚାଲି କରି ଗଲେ, ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ ଆଦି ଗଡ଼ଜାତ ବାଟେ ଯିବାକୁ ହୁଏ । ଢେଙ୍କାନାଳରେ ଚନ୍ଦ୍ରଶେଖର ପାଣି ନାମରେ ଜଣେ କର୍ମଚାରୀ ଅଛନ୍ତି । ସେ କେତେକ ଗୀତ ନାଟକ ଲେଖିଛନ୍ତି । ଆନନ୍ଦପୁର ବର୍ତ୍ତମାନ ସିଂହଭୂମ ଜିଲ୍ଲାରେ ଗୋଟିଏ ଛୋଟିଆ ପ୍ରଗଣା ହୋଇ ରହିଛି ।

୧

ସିଂହଭୂଇଁ ଦେଶ ସିଂହ ନରନାହା
  ଗାଦିରେ ଅଛନ୍ତି ବସି;
ବେଢ଼ି ଚଉପାଶେ, ପାତ୍ର ମନ୍ତ୍ରୀଏ ଲୋ,
  ଗୁଣ ବଖାଣନ୍ତି ହସି ।

ଆସି ବେଗେ କାହୁଁ ଭାଟ ଶ୍ରୀଛାମୁରେ
  କର ଯୋଡ଼ି ହେଲା ଠିଆ;
ନୋଇଁ ମଥା, ଝାଣେ କହିଲା ଦୁଖ ଲୋ,
  ବୁକେ ଦହିହୁଏ ହିଆ ।

"ନାନା ଦେଶ ବୁଲି ଗଲି ମୁଁ, ରାଜନ, —
  କାଶ୍ମୀର କୋଶଳ ବଙ୍ଗ
ଦ୍ରାବିଡ଼ କେରଳ ଚେର ସଉରାଷ୍ଟ୍ର
  କୁନ୍ତଳ ଚୋଳ କଳିଙ୍ଗ ।

ଜମ୍ବୁଦ୍ୱୀପେ ନାହିଁ ଦେଶ ତ ଏମନ୍ତ
ଯହିଁ ମୁଁ ନାହିଁଛି ଯାଇ;
କେତେ ଠାବେ କେତେ ଭେଟିଲି ସଜ୍ଜନ,
ଗୁହାରି ଶୁଣିଲେ ନାହିଁ ।

ଧନ ରତ୍ନ ବସ୍ତ୍ର ହାତୀ ଘୋଡ଼ା ରଥ
ନୁହେ ତ ମାଗୁଣି ମୋର;
ଭାଟ-ଜାତି, ନୃପ, ସ୍ୱଭାବେ ଦୁଖୀ ହେ,
ମଣିକ ମଣୁ ପଥର ।

ସୁନା ରୁପା ଆଣି ଧରାଇଲେ ହାତେ,
ବାନ୍ଧି ପଗ ଦେଉ ଥିଲେ;
ଗାଇ ଗୀତ ଛନ୍ଦେ, ବଜାଇ ବୀଣା ହେ,
ବୋଲଉ ବଡ଼ ମହୀରେ ।

ମାଗି ଏବେ ବୁଲେ ପଡକା ଗୋଟି ମୁଁ;
ବୁଲାଇବି ହାତେ ଧରି;
ରାଇଜଁ ରାଇଜେ ଦେଖାଇବି ଯାଇ,
କୀରତି ଗାୟନ କରି ।

ସେ କୀରତି ଯେବେ ଶୁଣି ଆନ ଦେଶେ,
କେ ବୀର ରାଜନମଣି,
ବଇର ହୃଦରେ ଧରି, ନୃପ, ମୋତରେ
ଗରବେ କରିବେ ରୁନ;

ଛଡ଼ାଇ ନେବେ ମୋ ପତକାଟି ହାତୁ,
ରଖିବେ ଆପଣା ଗଡ଼େ;

ସେତେବେଳେ ଯାଇ ଯୁଝି, ବଧି ଏକା
ପତକା ଦେବାର ମୋତେ ।
ଶୁଣି ଏ ମାଗୁଣି, କେତେ ନରମଣି
ରହିଲେ ମଉନେ ଚାହିଁ;
ନିଜ ବାହୁବଳେ ପ୍ରତେ କି ନ ଗଲେ,
ଛାତି ପତାଇଲ ନାହିଁ ।
ଦଇନେ ମୁଁ ତହୁଁ ବୁଲୁଛି, ନୃମଣି,
ବେବସା ନାହିଁ ମୋ କିଛି;
ଭାଟ ହୋଇ ମହିଁ ନିଜ କୁଳ ଧର୍ମ
ଛାଡ଼ିକ ପାରିବ ବାହିଁ ?
ଶୁଣିଲ, ରାଜନ, ତୁମ ବଡ଼ପଣ,
ଆସିଛି ଭରସା କରି;
ଯେନା ମୋ ଗୁହାରି ହେବ ଶ୍ରୀ ଛାମୁରେ,
ଗୀତ ଗାଇ ଯିବ ଚାଲି ।"

୨

ଶୁଣିଲେ ମଉନେ ବସି ସିଂହାସନେ
ସିଂହଭୂଇଁ ନରନାହା;
ନେହେ ଜଳଜଳ ଜୋତି ଫୁଟଇ ଲୋ,
ଉଲ୍ଲାସେ ନାଚନ୍ତି ବାହା ।
କହିଲେ, "ଏ ଭାଟେ ଆଣି ଦଅ ଝଟେ
ମୋ ଦ୍ୱାର ପତକା ଗୋଟି;
ହାତେ ବେଣ୍ଟ ଧରିଥିବ, ଭୂଇଁତଳେ
ଚୂଳ ଯାଇଥିବ ଲୋଟି ।"

ପାଇ ଆଜ୍ଞା, ବେଗେ ଆଣିଲା ପାଇକ,
ଧରିଛନ୍ତି ଅତି ଉଜଲେ;
ହାତେ ବେଣ୍ଟ ଝଣ୍ଟି, ଧଉଳା ଚୂଳ ଲମ୍ବ,
ଲମ୍ବୁଅଛି ଭୂଇଁତଳେ ।
ପାଇକର ହାତୁ ନେଇ, ନରମଣି
ଭାଟକୁ ଦେଲେ ଧକ୍କା;
ଧଇଲା ସେ ଭାଟ ଦଢ଼ାଇ ହାତ ଟଳି,
ଜୁହାର ନୋଇଁଲା ଠେକା ।
ଦେଲେ ତହୁଁ ତାରେ ନୃପ ପାଞ୍ଚ ଶାଲୁ
ବାଛି ପକ୍ଷିରାଜ ଘୋଡ଼ା;
ବଚନ ପ୍ରମାଣେ ଉଡ଼ଇ ବାଟେ ଲମ୍ବ,
ଘୁଞ୍ଚ ମାଡ଼ ନୋହେ ଲୋଡ଼ା ।
ପୁଛିଲେ "ଭାଟ, କି ମନକାମନା ତୋ
ପୂରିଲା ଜଣାଅ ମୋରେ";
"ପୂରିଛି ମଣିମା", ଜଣାଇ ସ୍ତୋକେ ଲମ୍ବ,
ଭାଟ ଚଳିଗଲା ଘରେ ।

୩

ବଚନ ପ୍ରମାଣେ ଚଳେ ବାଟେ ଘୋଡ଼ା,
ଉଡ଼ୁଛି ସତେ କି ଅବା,
ଗୋଡ଼ ଦଶ ହାତ ଘାଡ଼େ ପଡ଼ୁଛି ଲମ୍ବ,
ଦେଖେ ଯେ ହୁଅଇ ବାବା ।
ଚାହାନ୍ତେ, ପଶି ସେ ଗଡ଼ଖାଇ ନଈ
ବେଗେ ହୋଇଗଲା ପାରି;

ସାନ ନାଳମାନ ଡେଇଁ ଚାଲଇ ଲୋ,
ଅଙ୍ଗୁଠି ଫୁଟୁକ ମାରି ।
ଗାଆଁ ଦାଣ୍ଡେ ଘୋଡ଼ା ଧାଆନ୍ତେ ଝପଟି,
ମିଶିଯାଏ ଭୂଇଁତଳେ;
କଏ ଦେଖେ, କେ ବା ଦେଖଇ ନାହିଁ ଲୋ,
ଟାପୁ ଶବଦରୁ ବାରେ ।

ବଣେ ବଣ ଗଛେ ନଅନ୍ତ ପବନେ,
ତାଙ୍କ ସାଇଁ ସାଇଁ ନାଦେ;
'ହାହ୍-ହାହ୍' ,ଅବା କହନ୍ତ ଡରେ ଲୋ,
ଥରି ଘୋଡ଼ା ଚଉ ପାଦେ ।

ଚଢ଼ନ୍ତେ ଘୋଡ଼ା ସେ ପରବତ ଶିଖେ,
ଖୋଲ୍ ଖୋଲେ ଯାଏ ହଜି;
ପଥର ଗଡ଼ନ୍ତି ପ୍ରାଏ ଓହ୍ଲାଏ ଲୋ,
ଦେଖି, ଆଖି ହୁଏ ବୁଜି ।

"ଚାଲ ଥିରେ, ଘୋଡ଼ା", 'ରାଇ କହେ ଭାଉ,
"ଗୀତେ ମୁଁ ଗାଇବି ପରା;
ତୋ ଖାଉନ୍ଦ ଦେଶ ପଛେ ରହିଲାଣି;
ଆଉ କଆଁ ହେଉ ତୋର ?"

୪

ଥିରେ ଚାଲେ ଘୋଡ଼ା କଥା ମାନି ବାଟେ,
ଟାପୁ ନାଦ କରି ଟାଣେ;

ଘଡ଼ିକେ ଝପଇ ଅନ୍ଧେଇ କୋଣ ଲୋ,
ମାଡ଼ି ବିଲ୍ ପଦା ବଣେ ।

ବସି ଭିଡ଼େ ଭାଟ ମେଲିଲା ପତକା,
ବେଣ୍ଟ ମୁଠାଇଲା ହାତେ;

ଝିଲି ଝିଲି ରଙ୍ଗେ ଖେଳି, ପତକା ଲୋ,
ଉଡ଼ିଲା ପବନ ଘାତେ ।

ନାଲି ନେଳି କଳା—ବର୍ଣ୍ଣ ଶୋଭା ତାର
ତୁଣ୍ଡେ କି କହିବ ମୁହିଁ ?
ଇନ୍ଦ୍ରଧନୁ ପ୍ରାଏ ଉଡ଼ଇ ଶୂନ୍ୟେ ଲୋ,
ହସେ ସମସଏ ଗୁହିଁ ।

କହେ, "ଭାଟ କୁଳେ ଜନମ ମୋହର,
ଖ୍ୟାତ 'ସମସଏ' ନାଆଁ;
ମିଶେ ଗଙ୍ଗା ଛୁଲେ ଯମୁନା ଯହିଁ, ସେ
ପ୍ରୟାଗ ସଇଜେ ଗାଆଁ ।

ସିଂହଭୂଇଁ ଦେଶ ସିଂହ ନରସଣ—
କନିଷ୍ଠ ଦୁଲ୍ଲଲ ମଣି
ବିକ୍ରମ ସିଂହ ଯେ, ସିଂହ ପ୍ରାଏ ଏକା
ବିକ୍ରମ ତାଙ୍କର ଜାଣି ।

ଭାଇଭାଗ ପାଇ ପିତୃ ବାର ଗୋଟି,
ନିଶଙ୍କେ କଲେ ସଜୁତ;
ବଣ ବାଘ ସିଂହ ମାଇଲେ କୋଟେ ର,
ନିଜ ଖଣ୍ଡାମୁନେ କାଟି ।

ପର୍ବତକୁ ଭାଙ୍ଗି ଥଳାଇ ଗଢ଼ିଲେ
କ ଦିବ୍ୟ ସୁନ୍ଦର ଗଡ଼;
ନାହିଁ ମଝଞ୍ଜ ଅବା ନ ଥିବ ଗଡ଼ କି
ଆନନ୍ଦପୁରରୁ ବଡ଼ ।
ଜଣି ବାହୁବଳେ ନେଲେ ନରମଣି
ରାଇଜୁ ରାଇଜ କେତେ;
ନିଜ ଦେଶ ସୀମା ଚଉ ଗୁଣ କରି,
ବଢ଼ିଲେ ପରଜା ହିତେ ।
ତାଙ୍କ ବଇରେଖ ଧରି ମୁଁ ବୁଲୁଛି,
ଗାଉଛି କୀରତ ଗୁଣ;
ବଳ ଯେବେ ଅଛି, ନିଅ ବଇରେଖ
ଛଡ଼ାଇ; ବୁଝିବି ଠାଣ ।”

୫

ଦେଶୁ ଦେଶ ବୁଲି ଯାଏ ଭାଟ ଚାଲି
ନେଉଛି ଯହିଁ ତା ଘୋଡ଼ା;
ବଚନ ପ୍ରମାଣେ ଚାଲେ ତ ଘୋଡ଼ା ଲେ,
ଛାଟ ମାଡ଼ ନୋହେ ଲୋଡ଼ା ।
ଉଡ଼ୁଛି ପତାକା ଗୋଟି ହାତେ ତାର,
ଦେଖନ୍ତି ଜଗତ ଜନେ;
କହନ୍ତି, “ଏ ଯାର ପତକା, ତା ତୁଲେ
ମହୀରେ ସର କେ ଠାଣେ ?”
ଭୁଣ୍ଡେ ସେ ଗାଉଛି ବକ୍ରମ ସିଂହଙ୍କ
ଅତୁଲ୍ୟ କୀରତ ଗାଥା;

ଶୁଣି, 'ଧନ୍ୟ ଧନ୍ୟ' କରନ୍ତି ଲୋକେ ଲୋ,
ଜୁହାରି ନୁଆନ୍ତି ମଥା ।

ସାଇଜୁ ସାଇଜେ ବୀର ନରବରେ
ବାଟ ତା ଛାଡ଼ନ୍ତି ଡରି;
ଏ ମର୍ତ୍ତ୍ୟମଣ୍ଡଳେ କେ ଅଛୁ ଯେଣିକି ଲୋ,
ଗୌରବେ ରଖିବ ଧରି ?

ଗ୍ରୀଷ୍ମ ଋତୁ ତା କଟିଯାନ୍ତେ, ଝଟେ
ଗଲା ଚତୁର୍ମାସ୍ୟା ବିତି,
ଶରତ ହେମନ୍ତ ଶୀତ ବସନ୍ତ ଲୋ—
ଛଅ ଋତୁ ଏପରିଟି ।

ଛଅ ଋତୁ ଘୋଡ଼ା ପିଠିରେ ବସି ସେ,
ଟପୁଛୁ ବିଦେଶ ଭୂଇଁ;
ଛାର ଭାଟ ଜଣେ ଗୁଳ୍ପଛୁ ଠାଣେ ଲୋ,
ମଝେ କେ ନିଷେଧେ ନାହିଁ ।

୨

ବୈଶାଖ ମାସ ଆଦ୍ୟ ଦିନେ ଫେରି,
ଖାତେନ ଯାତ୍ରୀ କେ ବାଟେ
ଓଳଗି ରାଠାଜ୍ ପ୍ରବେଶ କଲା ଲୋ,
ବିକ୍ରମ ସିଂହଙ୍କ ହାଟେ ।

ବସି ସଭାମଧ୍ୟେ କହିଲେ ବିକ୍ରମ,
"ପଢ଼ ତ ପାଠ ଭାଞ୍ଜିଆ" ;

ଆଜ୍ଞା ପାଇ, ଝଟକେ ଚଉଠାଉ ପଢ଼ି ଚଲେ,
ହେଲା ସେ ପାଞ୍ଜିଆ ଟିଆ ।

"ଧର ବଇରେଖ ଅଇଲା, ସଜନ,
ସଇଜୁ ସଇକେ ମୁହିଁ,
ବଣ ବିଲ ପଦା ଗାଆଁ ଗଡ଼ ବାଟେ
ତୁଣ୍ଡେ ଗୁଣ ଖ୍ୟାତି ଗାଇ ।
ବୁଲିଲି ମଗଧ ଗାନ୍ଧାର ଗୁର୍ଜର
କାଶ୍ମୀର କୋଶଳ ବଙ୍ଗ
ଦ୍ରାବିଡ଼ କେରଳ ଚେର ସଉରାଷ୍ଟ୍ର
କୁନ୍ତଳ ଚୋଳ କଳିଙ୍ଗ ।
କାହିଁ କେଉଁ ଦେଶେ ନ ଭେଟିଲି ଖୋଜି
ବାଟେ ମୋ ସୋଧିବା ପାଇଁ;
ଗଲି ଯହିଁ, କେତେ ନୃପ ଆଚମ୍ବିତେ
ମୋ ମୁହେଁ ରହିଲେ ଗୁହିଁ ।
ହକାରି କହିଲେ, 'କେଡ଼େ ବଡ଼ ନାଆଁ
ରଚି ବୁଲୁଅଛୁ, ଭାଟ;
ନୋହିଲେ, ଏ ହତଭାଗ୍ୟ ପାଇଁ ଜାଣୁ
ମୁଣ୍ଡ ହୋଇଯାନ୍ତା କାଟ ?'
ଶୁଣି, ମନତୋଷେ ଫେଡ଼ିଲି ବିଶେଷେ
ମୋ ହୃଦ ଅମର ଗାଥା;
ଏ ଜନ୍ମେ, ନୃପ, ତା ଯିବ କି ପାସୋର
ବେକେ ଲାଗିଥାଉଁ ମଥା !

ହେଲେ, ନୀଳାଚଳେ ପହଞ୍ଚି ଯେବେ ମୁଁ
    ଶୀଘ୍ରପଣେ ବଡ଼ଦାଣ୍ଡେ
ଗାଇ ଗୀତ ତୁଣ୍ଡେ, ଛାଡ଼ି କଳଆର,
    ଘୋଡ଼ା ଚଳାଇଲି ଗୁଣ୍ଡେ;

ଆସିଲେ ତତକ୍ଷଣ ଜଡ଼ି କ ଜଅସୁ
    ଗଜପତି ପଠାଏତ;
ବୟସ ନୋହିବ କୋଡ଼ିଏ ଅଧିକ,
    ରୂପେ କାର୍ତ୍ତିକେୟ ସତ ।

ଗର୍ଜି ଅଜ୍ଞାକଲେ ପାଇକେ, ମୋରେ ସେ
    ଧରି ନେବାପାଇଁ ଝଟେ;
ଆଜ୍ଞା ପାଇ, ନୃପ, ଦାଣ୍ଡୁ ଧରି ବେଗେ
    ନେଲେ ସେ ପାଇକ ମୋତେ ।

କହିଲେ, 'କି ଗାଉ, ଗାଅ ଆଉ ଥରେ
    ମୋ ଆଗେ, ଭାଟ ତୁ ଏବେ';
ଗାଇଲି ମୁଁ; ଶୁଣି, ଧଇଲେ ପତକା,
    ବୋଇଲେ, 'ନ ଦେବ କେବେ ।'

ପିଲା ବୋଲି ମନେ ବିଚାରି, କହିଲି
    ଯାଇ ଗଜପତି ପାଶେ;
ଶୁଣି ସେ ଭାଷିଲେ, 'ରଚିଛି କୁମର,
    ମୋରେ କି ଛଡ଼ାଇ ଆସେ ?

ନାଅ ଯେଉଁମନ୍ତ୍ରେ ପାଳୁଛୁ, ଭାଟ, ତୁ,
    ମିଛେ ମୋରେ କହୁ ସିନା ।'

କେତେମନ୍ତ୍ରେ କର ଉପାୟ, ସଜନ,
ଫେରି ନ ପାଇଲି ବାନା ।
ମାଗି ଶ୍ରୀଛାମୁରୁ ଆଣିଲା ବେଳେ ମୁଁ
କହି କି ନ ଥିଲି ଆସି ?
ବାନା ଏବେ, ପ୍ରଭୁ, ଦିଅ ଆସି ମୋରେ,
ଗାଇ ଗୁଳିଯିବି ହସି ।"

୭

ଶୁଣିଲେ ବିକ୍ରମ ସିଂହ ନରମଣି;
କହିଲେ ବଜ୍ରର ଦଣ୍ଡେ,
"ବାନା ଦେଇ ଭଟେ, ଆପଦୁ ତାରିବ,
ପଣ ମୁଁ କରିଛୁ ଭୁଣ୍ଡେ ।
ଉଠ ପାତ୍ର ମନ୍ତ୍ରୀ, ନ କର ବିଳମ୍ବ,
ସଜାଡ଼ ଯାଇ ସଇନ,
କଥା ଦେଇ ଥରେ, ଟାଳିଲେ ସେ କଥା,
କୁଳେ ଅପଖ୍ୟାତି ଜାଣ ।
ସ୍ୱଭାବେ ଅଜ୍ଞାନ ଦାରୁତ କୁମର,
ଧରଇ ସାପ ଲାଙ୍ଗୁଡ଼;
ବିବେକୀ ହୋଇ କି ଗଜପତି ରଜା
ଏମନ୍ତ କଲେ ବିଚାର ?
ସାକ୍ଷାତ ଚଳନ୍ତି-ବିଷ୍ଣୁ ବୋଲି ତାଙ୍କୁ
ନ ମାନେ ମହୀରେ କିଏ ?
ହେଲେ, ପଣ ମୁଁ ତ ରଖିବି ଏ ପିଣ୍ଡେ
ପ୍ରାଣ ରହିଥିଲା ଯାଏ ।"

୮

ହାତୀ ଘୋଡ଼ା ରଥ ସଇନ ସାମନ୍ତ
 ଧରି ସେ ବିକ୍ରମ ସିଂହ
ଚାଲନ୍ତେ, ବସୁଧା ଉଠିଲା ଥରି ଲୋ,
 ପର୍ବତେ ନୋହିଲେ ଥୟ ।
ବଣ ଖୋଳିଲେ ଗର୍ଜି ଯାଆନ୍ତି ସଇନେ,
 'ଜୟ ମା ପାଉଡ଼ି' ଡାକି,
ବଣେ ବଣ ହାତୀ, ସିଂହେ କୋଠରେ ଲୋ,
 ଅତଙ୍କେ ପଳାନ୍ତି ଲଖି ।
ଦେଖିଲେ ମୟୂରଭଞ୍ଜ ନରମଣି—
 କେ ଯେସି ଅଛଇ ଗଡ଼େ,
ତଥ୍ୟ ବୁଝିବାକୁ ନୋହିଲା ତର ଲୋ,
 ଉଠିଲେ ଯୁଦ୍ଧକୁ ଖରେ ।
କରଞ୍ଜିଆ ଘାଟି ବାଟ ଜଗି, ହେଲେ
 ପର୍ବତ ପଶ୍ଚାତେ ଠିଆ;
ଭାଙ୍ଗି ସେନା ବାଡ଼, ବିକ୍ରମ ଥାଟେ ଲୋ,
 ମାରି ଦେଇ ଗଲେ ଝିଅଁ ।
ଆପଣା ପୁଅଙ୍କ ବଳତେ ଭୁଲିଲ
 ବୁଡ଼ିଲା ମୟୂରଭଞ୍ଜେ;
ମୁଣ୍ଡେ ହାତ ମାରି, ଫେରି ସ୍ୱଜନ ଲୋ,
 ଗଡ଼ରେ ପଶିଲେ ଲାଜେ ।
କେନ୍ଦୁଝର ନୃପ ଶୁଣିଲେ ହରଷୁଁ
 ଆସ କେ ବଇରୀ ଆଠ;

ଅଲଭ୍ୟ ଯୁଦ୍ଧକୁ ନୋହି ତଅର ଲୋ,
ଥରେ ଘଉଡ଼ଦେଲେ ବାଟ ।

ହେଲେ, ଢେଙ୍କାନାଳ ନୃସିଂହ ମହୀନ୍ଦ୍ର
ମନ୍ତ୍ରେ ବଳଆର ବଡ଼;
ସିଂହ ପଲ ଉଡ଼ି ବାହୁପ୍ରତାପେ ଲୋ,
ତୋଳି ନେଇ ଅଛନ୍ତି ଗଡ଼ ।

ଡବ ଡବ ନାଆଁ ବାଜୁଛି ରାଇଜେ
ପରଜା ପାଳନ ପାଇଁ;
ଜଣେ ଗଡ଼େ ଭୁଞ୍ଜି ନ ଥିଲେ ଯାଏ ଲୋ,
ଭୋଗେ ନୃପ ଥାନ୍ତି ରହି ।

ସେ ରାଜ୍ୟ ବଇରୀ ପଶିଲେ ଲୁନ କ
ହେଲେ ନରମଣି ଡରେ ?
ମୁଣ୍ଡ ପଛେ ଛିଡ଼ି ଲୋଟିବ ତଳେ ଲୋ,
ନାହିଁ ନୋଇଁଦେବେ ତଳେ ।

ଭେଟିଲେ ବିକ୍ରମ ଥାଟ ଅସି ବେଗେ,
ଅଗୁଳ ଯୁଝିଲେ ବାଟେ;
ଦିନୁଦିନ ଛଅ ଏଗାର ଦିନ ଲୋ,
ଯୁଦ୍ଧ ବଢ଼ି ଗଲେ ଅଣ୍ଟେ ।

ହେଲେ, ବାର ଦିନ ସିଂହକୁଳଚନ୍ଦ୍ର
ବାହାର ହୋଇଲେ ଆଗେ;
ଖଣ୍ଡା ଧନୁ ଶର ଧରି, ବଇରୀ ଲୋ,
କାଟି ଗଳିଗଲେ ରାଗେ ।

କି କଲେ ନୃସିଂହ ଫେରି ନିଜ ଗଡ଼େ,
ମୁହିଁ ନ ପାରିବି କହି;
ତହିଁ କବି ଚନ୍ଦ୍ରଶେଖର ଅଛନ୍ତି ଲେଖି,
ପାରିବ ଠିକେ ବତାଇ ।

୯

ଆଜ ରିପୁ ବାଟେ ନ ଭେଟି, ବିକ୍ରମ
ଗଲେ ବେଗେ ନୀଳାଚଳ;
ନୀଳାଚଳନାଥ ନୃସିଂହ ଦେବ ଲେଖି,
ହସି ଉଗାରିଲେ ଗିର—
"କିଏ ସେ ବିକ୍ରମ, କହିଲ, ଶ୍ରୀକ୍ଷେତ୍ରେ
ଆସିଛନ୍ତି ଯୁଝିବା ପାଇଁ ?
ସିଂହଭୂଇଁ ଦେଶ ଆନନ୍ଦପୁରର
ଭେଣ୍ଡା ବୀର ନରସାଇଁ ?
ବାପଙ୍କୁ ତା ଜାଣେ, ପୁରସ୍ତମ ସିଂହ,
ଥିଲା ଆସି ନୀଳାଚଳେ;
ପାଦେ ମୋ ଜୁହାରି ଯାଇଛନ୍ତି, ପୁଏ କି
ବତାଇ ନାହାଁନ୍ତି ଭଲେ ?
ବାଳୁତ ପିଲା ସେ ମୋ, ଅବୁଝା ସ୍ୱଭାବେ,
ରଖିଲା ହାତକା ବୋଲି,
ଏତେ ଦୂର ଦେଶୁଁ ଯୁଝିବାକୁ ମନେ
ଆସିଛନ୍ତି ବଇର ଧରି ।
ଥାଟେ ତା ନୁହେଁ ତ ଯୁଝିବା ବହୁତ,
ଡାକ ମୋ ଆଗକୁ ତାରେ;

ରଜା ସିନା ନିଜ ସ୍ୱରାଜ୍ୟ, ପରଜା ମୋ
ବଞ୍ଚିଥାଇ ମହୀତଳେ ।"

୧୦

ତାକର ପାଇ ସେ ସିଂହ ନରନାହା
ବଢେ ଗଜପତି ଆଗେ;
ସିଂହ ନେତ୍ରେ ସତେ ଜଳଇ ନିଆଁ ଲୋ,
ଗୃହାନ୍ତ ଦେଖେ ସନ ସ୍ୱଗେ ।
ତରେ ବୁଜି ଅଖି ଦଅନ୍ତ ପାଇକେ,
ପିଣ୍ଡୁ ପ୍ରାଣ ଯାଏ ଉଡ଼ି;
ନିଜ ଖଣ୍ଡା ପଟ ଶ୍ରୀକ୍ଷେତ୍ରସାଇଁ ଲୋ,
ଖୋଳରୁ ଥୋଇଲେ କାଢ଼ି ।
କହିଲେ, "ସ୍ୱଜନ ସିଂହକୁଳଚନ୍ଦ୍ର,
ଆସିଛ ଯୁଦ୍ଧକୁ ପରି;
ଟେକ ଏ ମୋ ଖଣ୍ଡା ଆଗେ, ପଛେ ପୁଣି
ମୋ ତୁଲେ ଯୁଝିବ ଭଲ ।"
ବଶି ବୁଢା ଦୁଇ ଅଗ ଚିପେ ଧରି,
ଟେକିଲେ ଖଣ୍ଡା ବନ୍ଧମ;
ଖଣ୍ଡା ଉକୁ ତଳେ ଟଙ୍କିଲା ନାହିଁ ଲୋ,
ପାଇଲେ ମହା ଶରମ ।
ହସେ ସ୍ୱଜସଭା ଫାଟିଲା; ତୁରତେ
କରି ହାତ ଠାରେ ତୁନି,

କହିଲେ ସେ ଗଜପତି, "ସୁଜନ ହେ,
ନ ଥକ ଉଠାଅ ପୁଣି ।"
ଏକ ହାତେ ଟାଣି ଉଠାଇନ୍ତେ, ଖଣ୍ଡା ସେ
ଉଠିଲା ନାହିଁ ତ ତଳେ;
ଦୁଇ ହାତେ ତହୁଁ ମୁଠା କରି ବେଣ,
ଟେକିଲେ ବିକ୍ରମ ଭିଡ଼େ ।

ଅଙ୍ଗୁ ଗମ ଗମ ଝାଳ ବୋହିଗଲା,
ତିନ୍ତିଲା ପିନ୍ଧିଲା ବାସ;
ଦୁହିଁ ଚଳ ଶିର, ଶ୍ରମ ଅଧ୍ୟାସେ ଲୋ,
ବୋହିଲା ନାକ ନିଶ୍ୱାସ ।

ତେବେ, ତହୁଁ ଲବେ ନ ପାରିଲେ ଟେକି,
ମୁଣ୍ଡ ଛିଡ଼ିଗଲା ଲାଜେ;
ବିସ୍ତୁକୂଟ ବୋଲି ବୋଲନ୍ତି ସିନା ଲୋ,
ଖଣ୍ଡା ଭାରି ଥିଲା ନିଜେ ।

ପଠାଣେ ଯେ କାଳେ ପଶି ବଙ୍ଗ ରାଜ୍ୟ
ପରଜା ଗଞ୍ଜିଲେ ବଳେ,
ତା ନୃପ ଲକ୍ଷ୍ମଣସେନ ଶରଣ ଲୋ,
ନେଲେ ଆସି ଏ ଉତ୍କଳେ ।

ତାଙ୍କୁ ତାରିବାକୁ ଗଜପତି ରଜା
ଅନଙ୍ଗ ଲୋଡ଼ିଲେ ଖଣ୍ଡା;
ତେଣୁ କାରିଗର ସେ ଖଣ୍ଡା ପଠି ଲୋ,
ଗଢ଼ିଲା ରକତଭୁଣ୍ଡା ।

ବରଷକେ ଥରେ ବାହାରେ, ଖୋଲେ ଯେ
ବାକି ବେଳେ ରହେ ଶୋଇ;
ଏବେ ମାଲପୁରେ ନୃସିଂହ ଦେବ ଲୋ,
ସଜେ ନ ପାରନ୍ତି ବୋହି ।

ହେଲେ, ଏକ ହାତେ ଟେକ ତନ୍ତୁ ଠିକେ,
ବୁଲାଇ ଥୋଇଲେ ତଳେ;
ଦେଖି, ମାଗି ଦୋଷ ବିକ୍ରମ ସିଂହ ଲୋ,
ଜୁହାର କଲେ ପୟରେ ।

ଗଜପତି ଝଟେ ତୋଳି ହାତେ ତନ୍ତୁ,
କହିଲେ, "ଉଠ, ରାଜନ,
ଏହିଭଳି ଏକା ପୁଅ ମଞ୍ଚେ ତାତ
ଜନମ୍ କରିବ, ଜାଣ ।"

ନିଜ ପୁଅ ହାତୁ ଆଣି ବଇରେଖ
ଦେଲେ ବନ୍ଧୁମାନେ ଥୋଇ;
ହସି ହାତେ ଭାଠ ଧଇଲା, ବାଟେ ଲୋ,
ଗାଇ ଗୁଲିଯିବା ପାଇ ।

"ରହ, ଭାଠ, ଦଣ୍ଡେ", କହିଲେ ବିକ୍ରମ;
ଭାଠ ଥିରେ ହେଲା ଠିଆ;
ପାଦ ପଡ଼େ ଉଠେ ଯିବାର ଲାଗି ଲୋ,
ଉଲ୍ଲାସେ ନାଚଇ ହିଆ ।

"ଭାଠ, ତୁ" ଏବେ ତ ଭାଷିଲେ ବିକ୍ରମ,
"ଯିବୁ ବଇରେଖ ଧରି;

ଗଜପତି କୁଳ କୀରତି ଗାଥା ରେ
ବଖାଣ କରିବୁ ବୁଲି ।
ଜାଣିମେ ଜଗତେ ଯେତେ ଯେ ନୃମଣି
ବଡ଼ ଧନ ମାନ ବଳେ—
ସର୍ବଙ୍କ ମଉଡ଼ମଣି ଏ ଓଡ଼ିଶା-
ଗଜପତି ମହୀତଳେ ।”

୧୧

ଦେଶ ଦେଶ ବୁଲି ଗଲା ଭାଟ ଚାଲି,
ଧରି ବଇରେଖ ଗୋଟି;
ଗଜପତି କୁଳ କୀରତି ଗାଥା ଲେ,
ଛନ୍ଦେ ହୋଇଅଛି ରଚି ।
କହୁଅଛି, “ଗଙ୍ଗାନଦୀ ଯେସନେ ମର୍ତ୍ତ୍ୟେ”
ସକଳ ନଦୀରୁ ବଡ଼,
ଗଙ୍ଗା ବଂଶ ନୃପେ ଏ ମହୀମଣ୍ଡଳ
ନରମଣି ମଧ୍ୟେ ସାର ।
ଡୋଳଛନ୍ତି ବାଛି ନୀଳାଚଳ ପୀଠେ
ଦେଉଳ ଅନଙ୍ଗଭୀମ,
ବ୍ରାହ୍ମଣ ଚଣ୍ଡାଳ ଜାତି ବାଛି ନାହିଁ;
ଦେଖ ନୀଳଚକ୍ର ଗୁଣ ।
ଜଗନ୍ନାଥେ ତହିଁ ବସି ସିଂହାସନେ
ଶୁଣନ୍ତି ଜଗତ ଅଳି;
ସୂର୍ଯ୍ୟ ଚନ୍ଦ୍ର ପାଣି ପବନେ ଅନୁଜ୍ଞା
ଦେଇ, ନେଉଛନ୍ତି ଗାଳି ।

କୋଣାର୍କ ଦେଉଳ ନରସିଂହ ଦେବ
ତୋଳା ଚନ୍ଦ୍ରଭାଗା-ତୀରରେ,
ଓଡ଼ିଆ ବଢ଼ାଣି ହାତଫଣ ମନେ
ଯେଡ଼ ଦେଖାଇଲେ ସ୍ଥିରେ ।
ଭଗ୍ନ ଅଙ୍ଗ ତଳେ ପଡ଼ିଛି ଦେଉଳ;
ଦେଖଲେ, କି ତୁଟିଛି ଶିରୀ ?
ଏ ମର୍ତ୍ତ୍ୟମଣ୍ଡଳ ଲୋକେ ଦେଖୁଛନ୍ତି,
ଆଖି ଆଗିରେନେ ମାଡ଼ି ।
ତାଙ୍କ ନାତି ଏବେ ନୃସିଂହ କରନ୍ତି
ଜଙ୍ଗଲ ଦେଶେ ବସତି;
ଯେଡ଼କ ପଣ୍ଡିତ, ତେଡ଼େ ନ୍ୟାୟବନ୍ତ,
ବନମେ ଦୁର୍ଲ୍ଲଭ ଅତି ।
ସେ ନୃମଣି ଗୁଣ ଧର୍ମ ମୁଁ ଗାଇବ,
ତୁଣ୍ଡେ ମୋ ନାହିଁଛି ବଳ;
ସ୍ଥିର ଭାଟ ମୁହିଁ; ସ୍ତୋକେ କହୁଅଛି;
ଶୁଣ, ଭାଗ୍ୟ ଥିଲେ ଭଲ ।”

୧୨

ଦେଶୁ ଦେଶ ବୁଲି ଗଲା ଭାଟ ଚୁଲି,
ଧରି ବଇରେଖ ଗୋଟି;
ଗଜପତି କୁଳ କୀରତି ଗାଥା ଲୋ,
ତୁଣ୍ଡେ ଜଣାଇଲ୍ସ ରଟି ।
ସେହି ଗଜପତି କୁଳକୁ ଦୁଲାଳ
ବସେ ଆଜି ସିଂହାସନେ;

କୋଟି କୋଟି ଲୋକ ମଥାମଣିଟି ଲୋ,
ନାଆଁ କେ ଶୁଣିଛ କାନେ ?
ପାଦେ ମଥା ନୋଇଁ ଜୁହାରିବା ପାଇଁ
ଖୋଜନ୍ତି ରଜା ଆଇଛି;
ଗଜପତି କୁଂଠେ ଲୁଚନ୍ତି, ଛାଇ ଲୋ,
କହ କେ ଦେଖିଛ ଆସ୍ଥା ।
ନୋହିଲେ, କି ବାବୁଭାୟା ମାଲଚକେ
ଉଡ଼ାଉଥାଆନ୍ତେ ବାନା;
ପଣ୍ଡା ପଢ଼ିଆରି ଥାଆନ୍ତେ ଥଟି ଲୋ,
ମନ୍ତ୍ରୀୟ ଯା ନ ଥିଲା ଶୁଣା ?
ରାମ ଅଭିଷେକ ମହୁଡ଼ ଯାଆନ୍ତା
ହାଡ଼ ଦୁଆରେ କି ଗଲ;
ଜଗନ୍ନାଥ ମଥାହୀରା ହୁଅନ୍ତା ଲୋ,
ନାସ୍ତାପାଦ ଯୋଡା କି ?
ମଣି ଗଣ୍ଡେ ନେଇ କଲଣି କାସ୍ମୀର,
କିଆଁଖିଆ ଗଲା ନାହିଁ;
କନା ଥାଇ, ଢ଼ଉ କପୁର ଯାଏ ଲୋ,
ନେତେନି ସିନା ଥିବା ଗନ୍ଧ ।
ଛାଡ଼, ଗଜପତି, ଏ ହଟ ବେଭାର,
ସୁମର ପୂର୍ବ କଥା;
ବାପେ ବଡ଼ବାପେ କି ନୋହିଥିଲେ ଦେ,
ଜଣେ ଟେକି ଗଲ ମଥା ।

# ଗାଲମାଧବ

ପ୍ରବାଦ ଅଛି ଯେ ଗାଲମାଧବ ଘୋଡ଼ା ଚଢ଼ି ଗଲାବେଳେ ବାଲି ଉପରେ ଘୋଡ଼ା କଣ ଗୋଟାଏ ଝୁଣ୍ଟିଲା । ବାଲି ଖୋଳିବାରେ ଉକ୍ତ ଗୋଟିଏ ଦେଉଳ ବାହାରିଲା । ସେହି ଦେଉଳଟି ହେଉଛି ଶଙ୍କରଦେବଙ୍କ। ଜଗନ୍ନାଥଙ୍କ ଦେଉଳ, ଯାହାକୁ ନୀଳାଚଳ ବୋଲୁପାଏ । କିନ୍ତୁ ତାହା ବର୍ତ୍ତମାନ ସମସ୍ତଙ୍କ ବଡ଼ଦେଉଳ ନୁହେଁ । ଏ ବଡ଼ଦେଉଳ ଅନଙ୍ଗଭୀମଦେବଙ୍କ ରାଜତ୍ୱରେ ନିର୍ମିତ । ସେଉଡ଼ଙ୍ଗବଡ଼ସ୍ଥି ବଂଶର ପୂର୍ବ ଦିଶ ଅଉ ନାହିଁ ।

୧

"ଟପ୍‌ଟପ୍‌, ଘୋଡ଼ା, ଚାଲ ରେ ତୁରିତେ,
ମାଡ଼ି ଆସୁଅଛି ଖରା;
କୋଶ ପାଞ୍ଚ ହେବ ପଡ଼ିଛି ଆଗେ ତ
ବାଲି ପଦା ଅପନ୍ତରା ।"

ପାଞ୍ଚ କୋଶ ବାଲି ପାରି ହେବ ବୋଲି
ଧାଇଁ ଘୋଡ଼ା ଚାଲେ ଝାଣେ;
ଯାଡ଼ି କଳିଆର, ଗାଲମାଧବ ଚଲେ,
ବସିଛନ୍ତି ଉଲ୍ଲାସ ମନେ ।

ଚଇତ୍ର ସକାଳ ସତ୍ତୁ ଖରା ପଛୁଁ
ମାରୁଛି ଅଲଟେ ନିକି;
ଖୋଲ ହାତ ଲମ୍ବେ ଯାଇ ପଡ଼ୁଛି ଚଲେ,
ବେଗ ବଢୁଁ ନୋହେ ଦେଖି ।

୨

ଗୁଲ୍କ ଗୁଲ୍କ ଘୋଡ଼ା ଝୁଣ୍ଟି ଅଙ୍କସ୍ପୃକେ
ଆଣ୍ଠୁ ମାଡ଼ି ଗଲା ପଡ଼ି;
ଅଲ୍ପେ ରହିଲା ସେ ଗାଲମାଧବ ଲୋ,
ଛଡ଼ିଲେ ପଛକୁ ଟଳି ।

ସାମାନ୍ୟ ଯେସନି ସେ ନୁହେଁ ମଞ୍ଜେ, ନାଆଁ
ବାଜେ ଡବ ଡବ ଲୋକେ;
ଘୋଡ଼ା ପିଠି ବଟନ ଆଜନ୍ମ କାନ୍ତୁ ଲୋ,
ପାଦେ ଗୁଲ ନାହିଁ ଠିକେ ।

ହେଲେ, ଝଟେ ପୁଣି ଡେଇଁ ବାଲିମଧ୍ୟେ
ଖୋଜେ କି ଝୁଣ୍ଟିଲା ଘୋଡ଼ା;
ଖୋଜି, ଚକ ଏକ ଦେଖିଲା ଲଟକ ଲୋ,
ନ ଯାଇ ଧୋଇଲା ଛୁଡ଼ା ।

କହିଲା, "ବେଟେଗେ ମୁଁ ଯାଇଥିଲେ ସିନା
ଦେଖନ୍ତ ଭ୍ରାଟିପା ମୁହିଁ;
ମାସ ହେଲା ଗୋସ୍ତ ନ ଭେଟି ଗିରସ୍ତେ
କାନ୍ଧେ କରୁଥିବ କୋହ ।

ଲଗାଇ ସିନ୍ଦୂରଠୋପି ମୋ କପାଳେ
ଦେଇ ଚେ ଥିଲା ମେଲାଣି,
ଯେବକାଳେ ଯୁଦ୍ଧ ମୁଁ ବାହାରିଲି ଘରୁ,
ମୁଣ୍ଡେ ଛଡ଼ାଇଲି ପାଣି ।

ଦୁଇ ନେସୁ ଜାର ଦୁଇ ଲୁହଧାର
ଗଡ଼ାଇ ଯୋଛୁଲା ଭ୍ରସ;

କହିଲା, 'ମା କାଳୀ ମଙ୍ଗଳେ ଆଣିମୁଁ,'
ହସି ପାଖେ ହେଲା ଛୁଡ଼ା ।
ସେ ତାର ମୂର୍ଚ୍ଛିତ ଏ ତରୁଣ ଦିନେ
କ୍ଷଣେ ନ ପାରିଲି ଭୁଲି; .
କେତେ ତ ସହିଲି ବଇରି-ଗଞ୍ଜଣା,
ଦେହେ ଖଣ୍ଡାଘାତ ଗୁଳି ।
ଯେସରି ମା କାଳୀ ଆଣିଛନ୍ତି ମୋତେ
ଶୁଭେ ତା ଗୁହାରି ଶୁଣି;
କି ତୁଷ୍ଟ ନୁହନ୍ତା ଏତେ ଦିନ ଅନ୍ତେ
ଦେଖିଲେ ନୟନେ ପୁଣି ।
ତେବେ, ଚକ୍ଷୁ ଏବେ ଖୋଲି ନ କାଢ଼ିଲେ
କୁଳକୁ କଳଙ୍କ ଯିବ ନା;
ସବୁ ଖଣ୍ଡାୟିତ ସହିପାରେ ମଣ୍ଟେ
ଜାତି ଅପଖ୍ୟାତି ବିନା ।"

୩

ବାର ଶହ ଲୋକ କୋଢ଼ି ଦୋଳା ହାତେ
ଅଣ୍ଟା ଭିଡ଼ିଛନ୍ତି କାମେ;
କଏ ଖୋଲେ, କଏ ବୁହଇ ବାଲି ଲୋ,
ବସି ନ ରହନ୍ତି ଜଣେ ।
ହେଲା ଚଢ଼ପାଶେ ବାଲିକୁଦମାନ
ପର୍ବତ ପରିଏ ଠିଆ,
ବାଜି ମେଘ ଅବା ଭାଜିବ ଶୂନ୍ୟେ ଲୋ,
ପ୍ରସନ୍ନ ହେଉଛି ହିଆ ।

ସହସ୍ର ଦୁଇ ଊଣାରୁ କ ବରଷ
      ସେଦିନୁଁ ଯାଇଛୁ ବିତି ?
ବାଲକୁଢ଼ ଯେତେ ଭଡ଼ ଏବନେ ଲୋ,
      ଗଳ୍ପଣି ଭୂଇଁରେ ଲୋଟି ।
ଏକା ତୋଠା ଗୋପୀନାଥ କୁଦ ଅଜା
      ଉଚ୍ଚେ ଟେକିଅଛି ମଥା,
ଚଢ଼ି ଥରେ ପୁଣି ଓହ୍ଲାଇଗଲେ ଲୋ,
      ଦେହୁଁ ନ ଛାଡ଼ିବ ବଥା ।
ତା ସମାନେ ଯେବେ କୁଦ ଦଶ ଗୋଠା
      ଠିଆ ହୋଇଥାନ୍ତା ଭଲେ ?
କେତେ ବାଲି ଥିଲେ ଖୋଳା ସେ ଲୋକେ ଲୋ,
      ପସନ୍ଦେ ଜାଣନ୍ତି ଭଲେ ।

୪

ଦୁଇ ମାସ ଠିକେ ଖଟି ଦିନରାତି
      ଦେଉଳ କଲେ ସେ ଛୁଡ଼ା;
ବେଢ଼ା, ମୁଖଶାଳା, ନାଟମନ୍ଦିର ଲୋ,
      ଗୋଟିଏ ଗୁଜଲେ ଗଢ଼ା ।
ହସି ଉଚ୍ଚୁଁ, ଗାଲମାଧବ କହିଲା—
      "ନିଜ ହାତ ଶ୍ରମ ବଳେ,
ଛୁଅର ଏ ମଣିଷ ସାଧି ବଡ଼ କାର୍ଯ୍ୟ
      ଧନ୍ୟ ହୁଏ ମହୀତଳେ ।
ଦିନେ ଗୋଠା ଗନ୍ଧମାଦନ ପର୍ବତ
      ନେଇ ମୁଣ୍ଡେ ହନୁମାନ,

ବାର ଶହ କୋଶ ଦୂରେ ରଖିଥିଲା
ଲକ୍ଷ୍ମଣଙ୍କ ଲାଗି ଜାଣ ।
ସାମାନ୍ୟ ନେପାଳୀ ମୂଷା ମହୋଦଧିକୁ
ଦେଲେ ସେତୁବନ୍ଧେ ବାନ୍ଧି;
ଶୋଇଥିଲେ ଭୀଷ୍ମ ଦେଢ଼ ମାସ ପରି
ଶେଯ ଶରମୂନେ ଛନ୍ଦ ।
ମନେ ଯେବେ ଯାହା କରିବ ପ୍ରତିଜ୍ଞା,
ଅସାଧ୍ୟ ନୋହିବ ତଳେ;
ଏ ପରି ଦେଉଳ ପୋତି ମାଟିତଳେ,
କି ଲାଭ ଜାଇଁ ମନ୍ଥରେ !”

୪

ସେ ଦେଉଳ ମଧ୍ୟେ ରତ୍ନସିଂହାସନେ
ବିଜେ ଯେ ଜଗତପତି;
ପାଶେ ବଳରାମ, ସୁଭଦ୍ରାଦେବୀ ଲୋ,
ବସନ୍ତି ଉଜଳେ ଅତି ।
ଲୋଢ଼ି ପଣ୍ଡା, ଧୂପ କଢ଼ାଇ ସେ ପଦେ
ଜୁହାରେ, ପିଟିଲା ଘୋଡ଼ା;
ସଞ୍ଜୁ ରାତି ଅଧେ ନୋହୁଛି ପରି ଲୋ,
ଘରେ ଯାଇ ହେଲା ଛୁଡ଼ା ।
ବାରହେ କି କରୁଥିଲା ବସି ଗୋସାଁ,
କହ କି ଧାରିବ ତୁଣ୍ଡେ ?
ଶୁଣି ହୁରୁଁ ଘୋଡ଼ା ଝାପୁ ଶବଦ ଲୋ,
ବୁଲୁ ହୋଇଗଲା କୁଣ୍ଡେ ।

୬

ଦେଖିଲେ ଦେଉଳ ଓଡ଼ିଶା ନୃମଣି,
ପୁଚ୍ଛା କଲେ ଆଚମ୍ବିତେ—
"ଗଡ଼ ଲୋକେ କିଏ କି ଜାଣିଛ, ଆଜି
ଯେଉଁ ତଥ୍ୟ କହ ମୋତେ ।"
ଶୁଣି ଜଣୁ ଜଣେ ଯୋଡ଼ିଦେଲେ ମଥା,
କହିଲେ, "ନ ଜାଣୁଁ କିଛି;
ଆମ ଜନ୍ମକାଳ ଆଗୁଁ ଏ ଦେଉଳ
ବାଲି ତଳେ ଥିଲା ଲୁଚି ।
ବିଧାତା ବିଶ୍ୱର ମାୟା କେ ବୁଝିବ
ମନୁଷ୍ୟ ଜନମ ପାଇ ?
କେତେ ରତ୍ନ କେତେ ଦୁର୍ଲ୍ଲଭ ସଙ୍ଖାଳ
ଲୁଚାଇ ରଖିଛି କାହିଁ ?"

୭

ହେଲେ, ସଭା ମଝେ ସିଂହାସନ ଆଗେ
ଜୀର୍ଣ୍ଣ ବୁଢ଼ା ହେଲା ଆସି;
ଚମ ଲୋଳ ଲୋଳ ଦିଶଇ ଦେହେ ଲୋ,
ମୁଣ୍ଡବାଳ ଧଳା ପାଟ ।
ଦାନ୍ତ ପଡ଼ି ପାଟି ହୋଇଛି ଧାକୁଆ,
ସଳଖେ ନ ପାରେ ଚାଲି;
ଡସ ଦୁଇ ପରି ଜଳୁଛି ତାହ ଲୋ,
ଆଖି ଦୁଇଗୋଟି ଖାଲି ।

କେଜାଣେ କାହିଁକି ଆସୁଅଛୁ ବୁଢା,
ଦେଖି କେ ଠକାଏ ହସି;
ଗର୍ଜି ବଖାଣିଲା, ରଜା ପରଜା ଲୋ,
ଶୁଣନ୍ତୁ ଟକେତେ ରସି ।

କହିଲା, "ବୟସ ହେଲା ସାତ କୋଡ଼ି,
ନେନେ କ ଦେଖିଲ ନାହିଁ ?
ସ୍ୱାମୁଙ୍କ ଗୋସେଇଁବାପ ଏହି ହାତେ
ବାହୁତେ ପାଳିଛି ମୁହିଁ ।

ଦେଖିଥିଲି ଏହି ଦେଉଳ ସେକାଳେ,
ନାଚୁଛି ଆଜି ନୟନେ;
ତୋଳିଥିଲେ ଇନ୍ଦ୍ରଦ୍ୟୁମ୍ନ ମହାରଜା
ବୋଲି ଶୁଣିଥିଲି କାନେ ।

ତାଙ୍କ ନାଆଁ ଅନୁରୂପେ ଇନ୍ଦ୍ରଦ୍ୟୁମ୍ନ
ସାଗର ଅଛିଠ ରହି;
ଦେଉଳ ବଢ଼େଇ ଗ୍ରମ୍ପୁ ପାଣି ମଠ୍ୟ
ଲୁଚନ୍ତି କୁରୁମ ହୋଇ ।

କଡ଼କଅ ମୁଆଁ ପାଚ ଡାକଲେ, ସେ
ପହିଁର ଦଅନ୍ତି ଦେଖା;
କେତେଢ଼େ ଶ୍ରମ ପଡ଼ ଦେଉଳ ଏ ମର୍ତ୍ତ୍ୟେ
ତୋଳି ଠିଆ କଲେ ଏକା !

ଧନେ ଜ୍ୟେଷ୍ଠ ଝଗ ତାପେ ଅଣଅଣ
ପବନ ଅଟିଲା ପାଢ଼;

ସମୁଦ୍ର ଉଛୁଳ ପାଣି ବୋହିଗଲା,
ଦେଉଳ ରହିଲା ବୁଡ଼ି ।
ଘର ଗାଆଁ କେତେ ଭାଙ୍ଗି ଭାସିଗଲା,
ତୁମ୍ଭେ କି କହିବ ମୁହିଁ ?
ଲକ୍ଷ ଶହ ଲୋକ ବୁଡ଼ିଗଲେ, ଠିକେ
ସମୁଦ୍ର ହୋଇଲା ଭୂଇଁ ।

ଗୋରୁ ମେଣ୍ଢା ଛେଳି ମଇଁଷିଙ୍କ ମଡ଼ା
କେତେ ଯେ ବୁଲିଲା ଭାସି;
ଖୁମ୍ପି ଲଗିଥାନ୍ତି ଠାବରୁ ଠାବକୁ
କୁଆ ଚିଲ ପଲ ଆସି ।

ଏଭଳି ସମୁଦ୍ର ମାଡ଼ିଆସେ ବୋଲି
ଲୋକେ ତ ନ ଥିଲା ଶୁଣି;
ସାକ୍ଷାତ ପ୍ରଳୟ ସିନା ସେ, ଛମ୍ମୁ ହେ,
ନୋହିବ କଣିକେ ଊଣା ।

ଛଅ ଦିନ ଛଅ ରାତି ସେ ପ୍ରଳୟେ
ରହିଲା ଗରଜ ଘୋଟି,
ସମୁଦ୍ର ଗରଭ ପାଲଟିଲା ଠିକେ
ମାଟିର ଭୂତଳ ଗୋଟି ।

ସାତ ଦିନେ ପୁଣି ଛାଡ଼ଯାଇ ପାଣି,
ବାଆ ହୋଇଗଲା ଥିର;
ହେଲେ, ବାଲିଗଦା ଜମା ହେଲେ ଉର୍ଦ୍ଧ୍ୱେ
ଦିଶିଲା ନାହିଁ ଦେଉଳ !

ଶମ୍ଭୁଙ୍କର ଅଣଗୋସେଇଁ ରାଇଜେ
କରୁ ତ ଥିଲେ ରାଜୁଡ଼ି,
'ଖୋଳି କାଢ଼ ବେଗେ ଦେଉଳ' ମଣିମା
ଆଜ୍ଞା ଜଣାଇଲେ ଋଷି ।

ଶୁଣି ପାତ୍ର ମନ୍ତ୍ରୀ ପରଜା ଯାଇକେ
ଦଣ୍ଡକେ ଲାଗିଲେ କାମେ;
କେ ଖୋଳି ବସିଲା, କେ ବୋହିଲା ବାଲି,
କେ ପରଖି ହେଲା କାମେ ।

ହେଲେ, ରାତେ ସ୍ୱପ୍ନ ଦେଖିଲେ ନୃମଣି,
ଆସନ୍ତି ବ୍ରାହ୍ମଣ ପାଶେ;
ଉଚ୍ଚେ ପାଞ୍ଚ ହାତ କି ଉଜ୍ଜଳ କାୟା
ପିନ୍ଧି ପୀତାମ୍ବର ଦଶେ !

କହିଲେ ସେ ନୃପେ, 'ନ ଖୋଳ ଦେଉଳ,
ପଶିଛି ପାତାଳେ ମହିଁ;
ସ୍ତ୍ରିଶ ଧନ ଲୋଭେ ମହୀତଳେ ଲୋକେ
ଦେବତା ରହିଲେ ନାହିଁ ।

ସ୍ତ୍ରିଶ ମୁହିଁ ଏଡ଼ ଜନେ ଯେବେ ପୁଣି
ଯଶେ ବଳାଇବେ ମନ,
ସେତେବେଳେ ମୋରେ 'ଜଗାଇଲେ, ନୃପ,
ଭୂଇଁରୁ ଉଠିବ ଜାଣ ।'

ବୋଲି ଏତେ ବିପ୍ର ହେଲେ ଅନ୍ତର୍ଦ୍ଧାନ;
ନିଦୁଁ ନରମଣି ଉଠି,

ସପନ ଚରିତ କହୁ ସଭାଜନେ
      କାନ୍ଦିଲେ କପାଳ ପିଟି ।

କହିଲେ, 'କି ମହାପାତକୀ ମହୀରେ
      ଜନମ ଥିଲି ମୁଁ ଆଇ !
କି ଲାଭ ଜୀଇ ମୋ ପାତାଳେ ଯେବେ ସେ
      ପଶିଲେ ଜଗତସାଇଁ ?'

ତେଜ୍ୟା କଲେ ଦୁଃଖେ ରାଜଭୋଗ ନୃପ,
      ବରଜି ସୁନା ଉଆସ;
ମାଟିରେ ଶୋଇଲେ, ଶାକାନ୍ନ ଭୁଞ୍ଜିଲେ,
      ଚିର କନା କଲେ ବାସ ।

ସେ ଦିନୁଁ ଛ କୋଡ଼ି ବରଷ ତ ଗଲା
      ଛଅ ଯୁଗ ପରି ବିତି;
ଛାମୁଙ୍କୁ ମିଶାଇ ଗୃହି ମହାରାଜା
      ଭୋଗ କରିଗଲେ କିତି ।

'ଖୋଳ ବାଲିମଧ୍ୟୁଁ କାଢ଼ିବ ଦେଉଳ',
      କେହି ନ ଧଇଲେ ତୁଣ୍ଡେ;
ପାସୋରି ସେ କଥା ଗୃହିଲେ ବାଟୋଇ
      ପକାଇ ପାଦ ତା ମୁଣ୍ଡେ ।

ଏବେ, ନୃପ, ବଟେ କେଣି ଅନ୍ତରଙ୍ଗ
      ଅଇଲା ଗାଲମାଧବ;
ଭାଳିତେ ଭାରିଯା ଥିବ କାନ୍ତ ବନେ,
      ଛାଡ଼ି ଯାଇଥିବ ଜୀବ ।

ତେବେ ହେଲେ, ଘାର ଖୋଲିଲା ଦେଉଳ,
ସିଂହଘରେ ଗୃହ୍ମିଲା ନାହିଁ;
ଭକ୍ତ ଡାକେ ଆଜ ବଳେ ହୋଇଛନ୍ତି
ମର୍ତ୍ତ୍ୟେ ତ୍ରିଭୁବନସାଇଁ
କହି, ହାତ ବାଡ଼ ଆଗେ ଭରା ଦେଇ,
ନଇଁ ହଟିଗଲା ବୁଢ଼ା;
ବୁଜ ଅଖି, ଖଣ୍ଡେ ଦୂରେ ଚଳିଲା ଲୋ,
କାମ୍ୟ ପୂର୍ତ୍ତି ହେଲା ପରା !

୮

ଖଞ୍ଜିଦେଲେ ନୃପ ବଂଶ ଶହେ ବାଟି
ଅସ୍ମୃତମଣୋହି ଭୂମି;
ବସି ଜଗନ୍ନାଥେ ବଡ଼ ଗହଣେ ଲୋ,
ରହିଲେ ଦେଉଳେ ପୁଣି ।

ଗାଲମାଧବଙ୍କୁ ଡକାଇ ବକସି-
ଶାଢ଼ୀ ବାନ୍ଧଦେଲେ ମୁଣ୍ଡେ;
ଶୁଣାଇଲେ ଗାଇ ପ୍ରଶଂସା ତାର ଲୋ,
ରାଜସଭା ମଧ୍ୟେ ତୁଣ୍ଡେ ।

ମର ସେହି ଗାଲମାଧବ ମଶାଣି-
ପାଉଁଶେ ଯାଇଛନ୍ତି ମିଶି;
ନାଆଁ ଆଜ ମତ୍ୟେ ଜୀଇଁ ରହିଛି ଲୋ,
ଲୋକେ ହେଉଛନ୍ତି ଘୋଷି ।

ତା କୁଳଦୁଲାଳ ବେଉଡ଼ଙ୍ଗ ବକସି
ଛପି ରହିଅଛନ୍ତି ଘରେ;

ଦେବତା ବୈଷ୍ଣବେ କୁଳ ଭଗତ ଲୋ,
ଅଲେଖ ରହିଥିବ ଦେହଲେ ।
କହିଲେ ତା କଥା ବଢ଼ାଇ ଅଧିକ
ଖଙ୍ଗସ ପାଇବ ଶତେ;
ଶୁଣ, ଜଗନ୍ନାଥ ଦେଉଳ ଗାଥା ଲୋ,
ଗାଇ ଗୁଲଯିବ ଝଟେଠ ।

୯

ହଜାରେ ବରଷୁଁ ବେଶି ଜଗନ୍ନାଥେ
ସେ ଟିକ ଦେଉଳେ ବସି,
ଗୁଳକଲେ ବ୍ରହ୍ମାଣ୍ଡ; ଆଜ ଦେଉଳେ ଲୋ,
ଧନେ ତ ନାହାନ୍ତି ବସି ।
ଶେଷକୁ ଅନଙ୍ଗଭୀମ ଗଜପତି
ତୋଳିଲେ ବଡ଼ ଦେଉଳ;
ମାଲଚନ୍ଦ ଦଶେ ଦଶ ଦିଗକୁ ଲୋ,
ଦେଖ, ଭାଗ୍ୟ ଥିଲେ ଭଲ ।
କେତେ ଉଞ୍ଚ କଏ ମାପିଛନ୍ତି ମହୀରେ ?
ଅଧା ପର୍ବତଟି ଜାଣ;
ଚଢ଼ି ଶିଖେ ତଳେ ଗୁହିଁଲେ, ଗାଈ ଲୋ,
ମୁଷାରୁ ଦିଶଇ ସାନ ।
ଏଥୁଁ ବୁଝୁଥିବ କାରିଗର ଗୁଣ,
ରଜାଙ୍କ ଭଗତ ଶତେ;
ବାଇଶ ପାହାଚେ ମହାପ୍ରସାଦ ଲୋ,
ଭୁଞ୍ଜିବ ଚଣ୍ଡାଳ ହାତେ ।

କେତେ ଦେଶେ କେତେ ନାହାନ୍ତି ଦେବତା
ଚଣ୍ଡୀ, ବିଶ୍ୱନାଥ, କାଳୀ;
ଏକ ଏକ ପୀଠ ମାତ୍ର ବସନ୍ତି ଲୋ,
ନିଜ ପୃଥ୍ୱୀଖଣ୍ଡ ଭୁଲା ।
ଜଗନ୍ନାଥେ କାହିଁ ମିଳାଲେ ବନେ
ମଣିଷ ହାତ ଦେଉଳେ
ବସି, ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଅଳି ଲୋ,
ଶୁଣି ବୁଝୁଛନ୍ତି ଭଲେ ?
ଧନ୍ୟ ଏ ଓଡ଼ିଆ, ଜଗତପତିଙ୍କି
ଘରେ ଆଣି କରେ ପୂଜା;
ଦେବପୁରୀ ବୋଲି ଓଡ଼ିଶା ଦେଶ ଲୋ,
ମନ୍ଦିରେ ଉଡ଼ୁଛି ଧ୍ୱଜା ।
ଜମ୍ବୂଦ୍ୱୀପେ ଯେତେ ଯାତ୍ରୀ କି ଭକତ
ଶ୍ରୀକ୍ଷେତ୍ରେ ଆସି କେ ନାହିଁ ?
ଦଣ୍ଡେ ନୀଳଚକ୍ର ଛାଇରେ ବସି ଲୋ,
ସ୍ୱର୍ଗେ ଭୁଲିଯାନ୍ତି ଜୀଇ ।

୧୦

ହେଲେ, ମର୍ତ୍ତ୍ୟ ଆଜି ବଡ଼ ହୀନ ଏବା
ହୋଇଛି ମୁକ୍ତିମଣ୍ଡପ;
କି ଥିଲା କି ହେଲା, କେହି କି ଭାବେ ଲୋ ?
ଦେବେ କରୁଥିବେ କୋପ ।
ପାହୁଲା ଅଧିଲା ଅର୍ଜିବାର ଲୋଭେ
ଭାଇ ବନ୍ଧୁ ଧରି ତହିଁ,

ଖୋଲ ଶାସନର ଯେତେ ଗୋଦସ୍ତ ଲୋ,
ଗୁଣ୍ଡ ହୋଇଛନ୍ତି ଯାଇ ।
ନାଆଁ ଲେଖି କାକୁ ଆସେ କ ନାଁ ଆସେ
ପଣ୍ଡିତ ଜଣକୁ ଜଣ ;
ଦେଖ, କୁଶବନ୍ଧୁ ସନ୍ତକ ଲୁଣ୍ଠାଇ
କାଢନ୍ତି ଗାରିମା ଗୁଣ ।
ଛାଡ଼, ଏ କଥା ମୁଁ କହିବ କପାଇଁ ?
ଶୁଣିଲେ ବାଛିବେ ଦୋଷ;
ଘରନଆଁ ପଛେ ଅଣ୍ଟିରେ ରହୁ ଲୋ,
କେହି ନ ବହନ୍ତୁ ରୋଷ ।
ଗାଲମାଧବର କାରଣରେ ଟେଟେବେ
ଏ ମହାକଳଙ୍କ ସିନା;
ଓଡ଼ିଆ ଜାତିର ଅଶାରି ମତେ ଲୋ,
ଏଥିଲାଗି ଯାଉଛନ୍ତି ଶୁଣା ।
ତ୍ରିଶ୍ରୀ ଧନେ ଲୋଭ ଛାଡ଼ି ଏ ଓଡ଼ିଆ
ଯେବେଣ ବଳାଇଲେ ମନ,
କହ, ମତୈତ୍ରୀ ଆଜ କେ ଖେଳି ଅଛି ଲୋ,
ହେବ ତାର ସମସମ ?

ସମାପ୍ତ

